# ପୃଥିବୀର ଲୋକକଥା

## ଆସାମର ଲୋକକଥା

( ପ୍ରଥମ ଭାଗ )

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍., ଏଲ୍. ଏଲ୍. ବି.,
ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍.

ନୀଳକଣ୍ଠେଶ୍ୱର ଶିକ୍ଷା ପୁସ୍ତକାଳୟ

PRUTHIBIR LOKAKATHA

[ Assam Lokakatha ]

Pratham Bhaga

# ପୃଥିବୀର ଲୋକକଥା

( ଆସାମର ଲୋକକଥା )



ପ୍ରକାଶକ :

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

ଧଉଳି, ପୁରୀ

ସି-୩୨, ସେକ୍ଟର-୭, ସି ଡ଼ି. ଏ., କଟକ-୧୪

ପ୍ରଥମ ପ୍ରକାଶ :—୧-୧୨-୯୭

ଦ୍ୱିତୀୟ ପ୍ରକାଶ : ୨୭—୨୦୦୮

ପ୍ରଚ୍ଛଦପଟ୍ଟ :

ଶ୍ରୀ ରବିନାରାୟଣ ନାୟକ

ମୁଦ୍ରାକର :

ଭାରତୀ ପ୍ରେସ, ସି ଡି ଏ, ସେକ୍ଟର-୭, କଟକ-୧୪

ମୂଲ୍ୟ—ଟ ୧୫-୦୦

# ସୂଚୀପତ୍ର





# ଜ୍ୱାଇଁ

ଜ୍ୱାଇଁଟି ବୋକା । ଶ୍ୱଶୁର ଘରୁ ଡାକରା ଆସିଛି । ଏକଥା ଶୁଣିଲାବେଳୁ ତାର ଆଉ ଗୋଡ ତଳେ ଲାଗୁ ନାହିଁ । ଯେଉଁ ଦିନକୁ ଡାକରା ଥିଲା, ତା'ର ପୂର୍ବଦିନ ରାତିରେ ତାକୁ ନିଦ ହେଲା ନାହିଁ । ଶ୍ୱଶୁର ଘରକୁ କେମିତି ଯିବ ଆଉ ସେଠି କ'ଣ କରିବ, ସେଇ କଥା ଭାବି ଭାବି ତାର ରାତି ପାହି ସକାଳ ହେଲା । କିନ୍ତୁ ସେ କୌଣସି ନିଷ୍ପତ୍ତିରେ ପହଞ୍ଚି ପାରିଲା ନାହିଁ ।

ସକାଳୁ ସକାଳୁ ଜାମାଯୋଡ ହୋଇ ସେ ଶ୍ୱଶୁର ଘରକୁ ବାହାରିଲା । ସେ ନିଜକୁ ବଢ଼ିଆ ଭାବରେ ସଜାଇଛି, ସେଥିପାଇଁ ତାର ସନେ ମନେ ଭାରି ଗର୍ବ । ସେ ବାଟରେ ଗଲାବେଳେ ତାର ପୋଷାକ ପଟକୁ ଚାହୁଁଥାଏ । ସେଇ ଚାହିଁବା ଭିତରେ ସେ ପଛକୁ ଅନାଇଲା । ସେ ଦେଖିଲା—କୁକୁରଟି ତା'ର ପିଛା ଧରିଛି । ସେ ଭାବିଲା—ଶ୍ୱଶୁର ଘରୁ ଜ୍ୱାଇଁ ଡାକରା ଆସିଛି । ସାଥୀରେ କାହାକୁ ନେବା ପାଇଁ ଖବର ଆସି ନାହିଁ । ଏପରି ଅବସ୍ଥାରେ କୁକୁରକୁ ସେ ଯଦି ସାଥୀରେ ନିଏ, ତା'ର ମାନମହତକୁ ଜଗି ଶ୍ୱଶୁର ଘର ଲୋକେ ହୁଏତ ତାକୁ କିଛି କହିବେ ନାହିଁ । କିନ୍ତୁ ମନେ ମନେ ଅସନ୍ତୁଷ୍ଟ ହେବେ । ବାହାର ଲୋକଙ୍କ ପାଟିରୁ କ'ଣ କେତେବେଳେ ବାହାରିବ, କିଏ ଜାଣେ ? ସେଥିପାଇଁ ନିଜେ ହୁସିଆର ହେବା ଉଚିତ । ଏଇ ପରିପ୍ରେକ୍ଷୀରେ ସେ କେବେହେଲେ କୁକୁରକୁ ସାଥୀରେ ନେବ ନାହିଁ । ତାକୁ ଯେ କୌଣସି ପ୍ରକାରେ ପ୍ରବର୍ତ୍ତାଇ ବିଦା କରିଦେବ ।

ମନେ ମନେ ଏ ନିଷ୍ପତ୍ତି ନେଇ ସାରିବା ପରେ ସେ ଘୁଡକୁ କହିଲା—"ତୋତେ ତ ମୋ ଶ୍ୱଶୁର ଘରୁ ଡାକର ନାହିଁ । ତୁ କାହିଁକି ମୋ ପିଛା ଧରିଛୁ ? ତୋର ଆସିବାଟା ଅନୁଚିତ । ତେଣୁ ଏଇଠୁ ତୁ ଫେରିଯା' ।" ଏତିକି କହି ମୂଢ଼ ବୁଲାଇ ସେ ପୁଣି ତା ରାସ୍ତାରେ ଚାଲିଲା । କିଛି ବାଟ ଗଲା ପରେ, ସେ ଭାବିଲା—ଘୁଇକୁ ଯିବା ମନାକଲି, କିନ୍ତୁ ସେ ମୋ କଥା ରଖିଲା କି ନାହିଁ ତାହାତ ମୁଁ ଦେଖିଲି ନାହିଁ । ତାପରେ ସେ ମୂଢ଼ ବୁଲାଇ ପଛକୁ ଚାହିଁଲା । ସେ ଦେଖିଲା, ଘୁଇ ତା କଥା ମାନି ନାହିଁ । ପୁଣି ତା ପଛେ ପଛେ ଆସୁଛି । ତାର ବହୁତ ରାଗ ହେଲା । କିନ୍ତୁ ତାର ରାଗ ସେ ପ୍ରକାଶ କଲା ନାହିଁ । କାରଣ ସେ ଜାଣେ, ରାଗିଲେ ଘୁଇ ତୁଏତ ତା କଥା ମାନିବ ନାହିଁ । ଫଳରେ ଘୁଇଟି ବିରକ୍ତ ହେବ । ପ୍ରତିଶୋଧ ନେବା ପାଇଁ ସେ ଜଦ୍‌ରେ ଶ୍ୱଶୁର ଘରକୁ ଯିବ । ‹ ରକାର ପଡ଼ିଲେ ଅପଦସ୍ତ ବି କରିବ । ସେଥିପାଇଁ ସେ ତାର ରାଗକୁ ଚାପି କରି ରଖିଲା । ଶାନ୍ତ ହୋଇ କରି କହିଲା—"ତୋତେ କହିଲି ପରା, ତୁ ଆଉ ଆସନା । କଥା ନ ମାନି ପୁଣି କାହିଁକି ଆସିଲୁ ?"

ଘୁଇଟି ନିରୁତ୍ତର । ସ୍ଥିର । ତାର ଫେରିବାର କୌଣସି ସୂଚନା ବି ନାହିଁ । ଏକଥା ଜ୍ୱାଇଁଟି ଉପଲବ୍ଧି କଲା । ସେ ଛାଇକୁ ପଚାରିଲା—"ଚୁପ୍ ହୋଇ କାହିଁକି ରହିଲୁ ଯେ ! କଣ ତୋର ମନର କଥା କହୁନୁ । କ'ଣ ନେଲେ ତୁ ଫେରିଯିବୁ ତା ବି କହ ।"

ତଥାପି ଛାଇଟି କିଛି କହୁ ନାହିଁ । ଏହା ଦେଖି ଜ୍ୱାଇଁଟି ଆମର ଭାବିଲା, ସଂସାରରେ ସମସ୍ତଙ୍କର ଲୋଭ ଅଛି । କିନିଷଟିଏ ଦେଲେ ସମସ୍ତେ ଖୁସି ହୁଅନ୍ତି । ତେଣୁ ସେ ଗୋଟିଏ କିନିଷ ଦେଇ ତାକୁ ବିଦା କରିଦେବ । କିନ୍ତୁ ପୁଣି ଭାବିଲା—ଏଡେ

ସୁନ୍ଦର ଭାବରେ ଲୁଗାପଟା ପିନ୍ଧି ମୁଁ ଶ୍ୱଶୁର ଘରକୁ ଯାଉଛି । ଗୋଟିଏ ପୋଷାକ ବାହାର କର ଦେହରୁ ଦେଲେ, ମୁଁ ଅସୁନ୍ଦର ଦେଖାଯିବି । ତେଣୁ ଦେହରୁ ଜାମା ଦେବାଟା ସୁବିଧା ହେବ ନାହିଁ । ତାପରେ ଭାବିଲା—ମଣିଷର ଇଜ୍ଜତ ବଡ଼ । ଧନ ଦୌଲତ ତା ଆଗରେ କିଛି ନୁହଁ । ପୋଷାକପତ୍ର ତ ତା' ତୁଳନାରେ ନଗଣ୍ୟ, ତୁଚ୍ଛ । ଭଲ ପୋଷାକ ନ ପିନ୍ଧିଲେ ବି ସେ ଶ୍ୱଶୁର ଘରେ ଜ୍ୱାଇଁ । ଆଉ କିଛି ହୋଇପାରିବ ନାହିଁ । ତା ଛଡ଼ା ଜାମାଯୋଡ଼ ନ ହେଲେ ବି ଶ୍ୱଶୁର ଘରେ ଆଦର କରିବେ । ସାଙ୍ଗ ସାଥୀରେ ଗଲେ, ତାର ଇଜ୍ଜତ ରହିବ ନାହିଁ, ତେଣୁ ତା ପୋଷାକରୁ ଗୋଟିଏ ଦେବ ପକାଇ ସେ ସ୍ଥିର କଲା । ତା ପର ମୁହୂର୍ତ୍ତରେ ଭାବିଲା, କଣଟିଏ ଦେଲେ ତାକୁ ବାଧିବ ନାହିଁ । ଶେଷକୁ ତା ମନକୁ ପଗଡ଼ି କଥା ଆସିଲା, ସେଇଠୁ ସେ ସାଙ୍ଗକୁ ପଚାରିଲା—"ତୁ ପଗଡ଼ି ନେଲେ ଚଳିଯିବୁ ତ ?" ଏତିକି କହିଲା ବେଳେ ତା ମୁଣ୍ଡ ହଲିଗଲା । ସାଙ୍ଗେ ସାଙ୍ଗେ ସାଙ୍ଗର ମୁଣ୍ଡ ବି ହଲିଲା । ଜ୍ୱାଇଁଟି ଭାବିଲା—ତା କଥାରେ ରାଜି ହୋଇ ସାଙ୍ଗଟି ମୁଣ୍ଡ ହଲାଉଛି । ତେଣୁ ଅତି ଖୁସି ମନରେ ପଗଡ଼ିଟି ବାହାର କଲା । ସାଙ୍ଗକୁ ସେଇଟି ଦେଇ କହିଲା—"ଏହାକୁ ନେ । ଏଇଠୁ ଫେରିଯା ।"

ପଗଡ଼ି ଦେଇ ଦେଲା ପରେ ମନଟା ତାର ମରିଗଲା । ତଥାପି ସେ ଆଗେଇ ଚାଲିଲା । କିଛି ବାଟ ଗଲାପରେ ସେ ଭାବିଲା—ପଗଡ଼ି ସିନା ନେଲା, କିନ୍ତୁ ତା ସାଙ୍ଗଟି ଅସିଲା କି ନାହିଁ, ତା ତ ସେ ଯାଞ୍ଚ କଲନାହିଁ । ତେଣୁ ସେ ପଛକୁ ଅନାଇଲା । ଦେଖିଲା—ସାଙ୍ଗଟି ପୁଣି ତା ପଛେ ପଛେ ଲାଗିଛି । ଏଥର ସେ ମନେ ମନେ ବିରକ୍ତ ହୋଇ ପଚାରିଲା—"ହଇରେ ପଗଡ଼ିଟି ଦେଲି,

ତୁ ସନ୍ତୁଷ୍ଟ ହେଲୁ ନାହିଁ ? ପୁଣି ଆସିଲୁ । ମୁଁ ଏଥର କଣ କରିବି ? କଣ ନେଲେ ତୁ ସନ୍ତୁଷ୍ଟ ହେବୁ ? କହ ।”

ଘୁଇଟି ସ୍ଥିର ହୋଇ ରହିଥାଏ । ଜ୍ୱାଇଁଟି ଭାବିଲ— ଦେହର କୋଠ୍‌ଟା ଅଧିକ ସାର । ନ ଗିଲିଲେ ବି ଚଳିବ । ଏଇଟା ଦେଇ କାମ ସଭ ହାସଲ କରିହୁଏ, ତାହେଲେ କିଛି କ୍ଷତି ନାହିଁ । ଏଥର କୋଠ୍‌ଟା ଦିଆଯାଉ । ତାପରେ ସେ କହିଲା—“କୋଠ୍‌ଟା ନେଇ ଫେରିଯିବୁ ?” ଏତିକି କହିଲାବେଳେ ମୁଣ୍ଡ ତାର ହଲିଗଲା । ସାଥେ ସାଥେ ଘୁଇର ମୁଣ୍ଡ ବି ହଲିଲା । ଜ୍ୱାଇଁଟି ଭାବିଲ—ତା କଥାରେ ରାଜି ହୋଇ ଘୁଇଟି ମୁଣ୍ଡ ହଲଉଛି । ତେଣୁ ସେ ଦେହରୁ କୋଠ୍‌ଟି ବାହାରି କଲା । ତାକୁ ଘୁଇ ଉପରକୁ ଫିଙ୍ଗି ଦେଇ ପୁଣି ତା ଗନ୍ତବ୍ୟ ପଥରେ ଚାଲିଲା ।

କିଛି ବାଟ ଗଲା ପରେ ସେ ଦେଖିଲା—ଘୁଇଟି ତା ପିଛୁ ଛାଡ଼ୁ ନାହିଁ । ତା ମୁଣ୍ଡ ଚକ୍ରି କାଟିଲା । ସେ ଭାବିଲା—ପଗଡ଼ି ଦେଲି ଆଉ କୋଠ୍ ଦେଲି, ତଥାପି ଘୁଇ ସନ୍ତୁଷ୍ଟ ହେଉ ନାହିଁ । କ'ଣ ବା ତାକୁ ଆଉ ଦେବି ? ଦେହରୁ ଆଉ ଯାହା ଦେବି, ସେଥିରେ ମୋର ମାନ ସମ୍ମାନରେ ଆଞ୍ଚ ଆସିବ । ଉପାୟ କ'ଣ ଏଥର ? ଶେଷକୁ ସେ ସ୍ଥିର କଲା—ସେ ପଛେ ଅସୁନ୍ଦର ଦେଖାଯାଉ, ଘୁଇକୁ ସେ ସାଥିରେ ନେବ ନାହିଁ । ତାକୁ ସେ ବିଦାକରିବ । ତାପରେ ସେ କହିଲା—“କଣ ନେଲେ, ତୁ ଫେରିଯିବୁ ? ଜାମାଟା ?” ଏତିକିବେଳେ ମୁଣ୍ଡ ତାର ହଲିଗଲା । ଘୁଇର ବି ମୁଣ୍ଡ ହଲିଲା । ତେଣୁ ସେ ଜାମାଟି ଦେହରୁ ବାହାର କରି ଥୋଇ ଦେଲା । ପୁଣି ତା ରାସ୍ତାରେ ଚାଲିଲା ।

ବାଟରେ ଏମିତି ସେ ଥରକୁ ଥର ପଛକୁ ଚାହେଁ । ଗୁଇକୁ ଦେଖେ । ତାକୁ ସାଥିରେ ତାର ନ ଯିବା ପାଇଁ ଅନୁରୋଧ କରେ । ତାକୁ ମିନତି ହୋଇ କହେ । ତାକୁ ସନ୍ତୁଷ୍ଟ କରିବାକୁ ପୋଷାକ-ଟିଏ ବାହାର କରି ଦିଏ । ପୁଣି ଆଗକୁ ଚାଲେ । ଏମିତି ଗୋଟିକ ପରେ ଗୋଟିଏ ପୋଷାକ ଗୁଇକୁ ଦେଇ ଦେଇ ତା ଦେହରେ ଆଉ କଣ୍ଟି ଲୁଗା ରହିଲା ନାହିଁ ।

ସନ୍ଧ୍ୟାକୁ ସୂର୍ଯ୍ୟ ସେତିକିବେଳକୁ ବୁଡ଼ିଗଲେ । ଗୁଇ ବି ଲୁଚିଗଲା । ଜ୍ୱାଇଁଟି ଗୁଇକୁ ଦେଖି ଦୀର୍ଘଶ୍ୱାସ ପକାଇଲା । ସେ ଏବେ ଭାରି ଖୁସି । ଯାହା ହେଉ ଏକ ଗଳଗ୍ରହ ଚାଲି ଗଲା । ସେ ଏଥର ଦ୍ରୁତ ପଦରେ ଶ୍ୱଶୁର ଘର ଆଡ଼କୁ ମୁହାଁଇଲା ।

ସେ ତ ଅନ୍ଧାରକଣା । ଅନ୍ଧାର ମାଡ଼ି ଆସିବାରୁ ତାକୁ ଆଉ ଭଲ ଭାବରେ ଦେଖାଯାଉ ନ ଥାଏ । ସେ ଶ୍ୱଶୁର ଘର ଗାଁ ମୁଣ୍ଡରେ ପହଞ୍ଚି ସିନା ଯାଇଥିଲା, କିନ୍ତୁ ଏବେ ସେ କ'ଣ କରିବ, ସ୍ଥିର କରିପାରିଲା ନାହିଁ । ଯାହା ହେଉ ଗୋଟିଏ ବୁଢ଼ୀ ଗାଈ ରାସ୍ତାରେ ଠିଆ ହୋଇଥିବାର ସେ ଦେଖିଲା । ଗାଈ ପାଖକୁ ଗଲା । ତାକୁ ଦେଖି ସେଇଟା ତା ଶ୍ୱଶୁର ଘର ଗାଈ ବୋଲି ସେ ଠଉରାଇଲା । ସାଙ୍ଗେ ସାଙ୍ଗେ ଗାଈର ଲାଞ୍ଜ ସେ ଧରି ପକାଇଲା । ଗାଈଟିର ଲାଞ୍ଜ ଟଣା ହେବାରୁ ସେ ଗୁହାଳ ଆଡ଼କୁ ଏକ ମୁହାଁ ହୋଇ ଧାଇଁଲା । ଜ୍ୱାଇଁଟି ତ ଗାଈର ଲାଞ୍ଜ ଧରିଛି । ତେଣୁ ଶ୍ୱଶୁର ଘର ଗୁହାଳରେ ପହଞ୍ଚିବାକୁ ତାକୁ କିଛି ଅସୁବିଧା ହେଲା ନାହିଁ । ସେଇଠି ତାର ଖିଆଲ ଆସିଲା ଯେ ତା ଦେହରେ ପୋଷାକ ନାହିଁ । ଏପରି ଅବସ୍ଥାରେ ଶ୍ୱଶୁର ଘରେ ପହଞ୍ଚିବା ଅସୁନ୍ଦର । ତାର ଏ ଅବସ୍ଥା ଦେଖିଲେ, ଲୋକେ ହସିବେ । ଶଳାଶାଳୀ ଥଟ୍ଟା କରିବେ ।

ତାର ମାନ ସମ୍ମାନ, ଇଜ୍ଜତ ରହିବ ନାହିଁ । ତେଣୁ ସେ ଶ୍ୱଶୁର ଘର ଅଗଣାକୁ ଆଉ ଗଲା ନାହିଁ । ଗୃହାଳକୁ ଲାଗି କଦଳୀ ବଗିଚା । ତାହା ଶୋଆଇ ଘରକୁ ଲାଗିଛି । ଗୃହାଳ ଘରୁ କଦଳୀ ବଗିଚାକୁ ବାଟ ଅଛି । ସେସବୁ ଜ୍ୱାଇଁକୁ ଜଣା । ଜ୍ୱାଇଁଟି ବାଟ ଅଣ୍ଡାଳି ଅଣ୍ଡାଳି ଗୃହାଳରୁ କଦଳୀ ବଗିଚାକୁ ଆସିଲା । ସେଠି ସେ ବସିଲା । ତାହା ଶୋଆଇ ଘରର ଝରକା ପାଖ ।

କୁଣିଆ ଓ ନିମନ୍ତ୍ରିତ ଲୋକମାନେ ଖାଇପିଇ ଗଲେ । ଏପର୍ଯ୍ୟନ୍ତ ଜ୍ୱାଇଁ ଆସିଲା ନାହିଁ । ସେଥିପାଇଁ ଶ୍ୱଶୁର ଶାଶୁ ଉଭୟଙ୍କର ମନ ଭାରି କଷ୍ଟ । ତଥାପି ଜ୍ୱାଇଁ ଆସିବାର ଆଶା ତାଙ୍କର ଥାଏ । ସେଥିପାଇଁ ସେମାନେ ନ ଖାଇ ନ ପିଇ ଜ୍ୱାଇଁକୁ ଅପେକ୍ଷା କଲେ ।

ରାତି ବହୁତ ହେବାରୁ ବୁଢ଼ା ବୁଢ଼ୀକୁ କହିଲା—"ଜ୍ୱାଇଁତ ଆଉ ଆସିବ ନାହିଁ । ତେଣୁ ଆଉ ଅପେକ୍ଷା କରି ଲାଭ ନାହିଁ । ଆସ ଆମର ଖିଆ ପିଆ ସାରିଦେବା ।"

ବୁଢ଼ା ବୁଢ଼ୀ ଦୁହେଁ ଖାଇଲେ । ବୁଢ଼ା ଶୋଇବାକୁ ଗଲା । ବୁଢ଼ୀ ଶୋଆଇ ଘର ଓ ବାସନ ଧୁଆ ଧୋଇ କଲା । ବାସନ ଧୁଆ ପାଣିକୁ ଝରକା ବାଟେ କଦଳୀ ବଗିଚାକୁ ଫିଙ୍ଗି ଦେଲା । ଜ୍ୱାଇଁ ତ ସେଠି ବସିଥିଲା, ପାଣି ପଡ଼ିଥିବାରୁ ସେ ଅନ୍ୟ ଗୋଟିଏ ଜାଗାକୁ ଘୁଞ୍ଚିଗଲା । କଦଳୀ ବଗିଚାରେ ଲୋକଟିଏ ଏପଟ ସେପଟ ହେଉ- ଥିବାର ଦେଖି ବୁଢ଼ୀଟି ଚିନ୍ତିଲା । ସେ, ଚତ୍କାର କଲା । ତା ଚତ୍କାରରେ ବୁଢ଼ାଟି ଆଲୁଅଟିଏ ଧରି ପଦାକୁ ଆସିଲା । ବଗିଚାରେ ପଶି ସେମାନେ ଦେଖିଲେ ଯେ ଜ୍ୱାଇଁଟି ସେଠି ବସିଛି । ତାକୁ ସେମାନେ ଘରକୁ ଆଣିଲେ । ଭଲ ଲୁଗା ପିନ୍ଧିବାକୁ ଦେଲେ ।

ତାପରେ ଘରେ ଯାହା ଭଲ ଜିନିଷ ଖାଇବାକୁ ଥିଲା, ତାକୁ ଖୁଆଇଲେ ।

ଖାଇବା ଜିନିଷ ଭିତରେ ଝୁସ୍ୱ ଗୁଡ଼ ଥିଲା । କ୍ୱାଇଁଟି ଆଗରୁ ଝୁସ୍ୱଗୁଡ଼ କେବେ ଚାଖି ନ ଥିଲା । ତାକୁ ଏହା ଏତେ ଭଲ ଲାଗିଲା ଯେ ଏହାକୁ ଆଉରି ଖାଇବାକୁ ତାର ଇଚ୍ଛା ହେଲା । ଯେତେ ହେଲେ ସେ ତ କ୍ୱାଇଁ । କୌଣସି ଜିନିଷ ଖାଇବାକୁ ମାଗିବାଟା ତା ପକ୍ଷରେ ସୁନ୍ଦର ହେବ ନାହିଁ । ସେଥିପାଇଁ କଥା ଛଳରେ ସେ ଶ୍ୱଶୁରକୁ ପଚାରିଲା—"ଏଇ ଝୁସ୍ୱ ଗୁଡ଼ କେଉଁଠି ମିଳେ ?"

ଶ୍ୱଶୁର କହିଲା—"ଆମର ଆଖୁ ବିଲ ଅଛି । ତେଣୁ ଆମେ ଗୁଡ଼ ବନାଉ । ସେଇ ଗୁଡ଼ରୁ ଝୁସ୍ୱ ଗୁଡ଼ ବାହାରେ । ଆମେ ସେଇ ଝୁସ୍ୱ ଗୁଡ଼କୁ ମାଠିଆରେ ରଖିଥାଉ । ଏବେ ତ ଆଉ ଘରେ ମାଠିଏ ଗୁଡ଼ ଶିକାରେ ଝୁଲୁଛି ।"

ସେତେବେଳକୁ ରାତି ବେଶୀ ହୋଇ ଯାଇଥିଲା । ସମସ୍ତଙ୍କ ଆଖିରେ ଆଖିଏ ନିଦ । ସେ ଯାହାର ବିଛଣାରେ ପଡ଼ୁପଡ଼ୁ ଶୋଇ ଗଲେ । କିନ୍ତୁ କ୍ୱାଇଁଟି ଆଖିରେ ନିଦ ନାହିଁ । ମନ ଯାଇ ତାର ଝୁସ୍ୱ ଗୁଡ଼ ପାଖରେ । ସେ ତାର ବିଛଣାରେ ପଡ଼ିଥାଏ । ଶୋଇବାକୁ ଯେତେ ଚେଷ୍ଟା କଲେ ବି ସେ ଶୋଇ ପାରିଲା ନାହିଁ । ସେ ବିଛଣାରେ ଖାଲି ଛଟପଟ ହେଲା ।

ଝୁସ୍ୱଗୁଡ଼ର ସ୍ୱାଦ ଏବେ ବି ତା ପାଟିରୁ ଗୁଡ଼ ନାହିଁ । ସେ ମନକୁ ଭୁଲାଇବାକୁ ଚେଷ୍ଟା କଲା । କିନ୍ତୁ ପାରିଲା ନାହିଁ । ଶେଷକୁ ସେ ଉଠିଲା । ଘର ଅନ୍ଧାର ଅନ୍ଧାର ସେ ଠେଙ୍ଗାଟିଏ । [illegible] ତାକୁ ଧରି ଆଉ ଘରେ ପଶିଲା । ସେ ପୁଣି ଅନ୍ଧାର ଅନ୍ଧାର ଝୁସ୍ୱ ଗୁଡ଼ ଭରିଥିବା ଶିକାକୁ ପାଇଲା । ସେ ଠେଙ୍ଗାରେ ମାଠିଆକୁ

ତିଳଆଣ୍ଡକୁ ଠିକାଇଲା । ଶେଷରେ ମଠିଆ କଣା ହୋଇ ଝସଗୁଡ଼ ବୋହିଲା । ସେ ପାଣି ମେଳ କରି ସେଠି ଠିଆ ହେଲା । ମନ ବୋଧ କରି ପେଟେ ଝବ ଗୁଡ଼ ପିଇଲା । କିନ୍ତୁ ଝବ ଗୁଡର ବୁହା ବନ୍ଦ ନାହିଁ ! ବୁହା ବୁହିଥାଏ । ସେ ତ ତା ତଳେ ଠିଆ ହୋଇ ଥିଲା, ଫଳରେ ଝବ ଗୁଡ଼ରେ ତାର ଦେହ ଭିଜି ଗଲା ।

ଝବ ଗୁଡ଼ ଖାଇବା ନିଶା ଏବେ ତାର ଆଉ ନାହିଁ । କିନ୍ତୁ ଦେହଟା ଯାକ ଝବ ଗୁଡ଼ରେ ଭିଜି ଅଠା ଅଠା ଲାଗୁଛି । ତାହା ବଡ଼ ଅସ୍ୱସ୍ତିକର । ଜ୍ୱାଇଁଟି ତାହା ସହି ପାରୁ ନ ଥାଏ ।

ସେଇ ଘରେ ରେଜେଇ ପାଇଁ ତୁଳା ଭଣା ହୋଇଥିଲା । ଜ୍ୱାଇଁଟିକୁ ଭଲ ଲାଗିବ ବୋଲି ସେ ଯାଇ ତା ଉପରେ ଗଡ଼ିଗଲା । ଦେହରେ ତାର ତୁଳା ଲାଗିଗଲା । ଏପରି ବେଶରେ ଯେ ତାକୁ ଦେଖିବ, କ'ଣ ଭାବିବ ବୋଲି ଜ୍ୱାଇଁର ଭୟ ହେଲା । ସେ ସେଠି ରହିବାଟା ନିରାପଦ ମନେ କଲା ନାହିଁ । ସେ ସିଧା ସେଠୁ ଗୁହାଳକୁ ଗଲା । ତାର ଶ୍ୱଶୁରଙ୍କର ମେଣ୍ଢା ବହୁତ । ସେମାନେ ଖାଇ ପିଇ ବେଶ୍ ହୃଷ୍ଟପୁଷ୍ଟ । ରାତିଯାକ ସେ ତାଙ୍କ ଭିତରେ କଟାଇ ଦେବ । ଭୋରରୁ ଭୋରରୁ ସେ ଧୁଆଧୋଇ ହୋଇଗଲେ, କେହି ତାର ହଟହଟା ବିଷୟରେ କିଛି ଜାଣି ପାରିବେ ନାହିଁ ।

ତାର ଶ୍ୱଶୁର ଘରେ ତ ବହୁତ ମେଣ୍ଢା । ଚୋରମାନଙ୍କର ବହୁତଦିନ ଆଗରୁ ସେଇ ମେଣ୍ଢାଙ୍କ ଉପରେ ନଜର ଥାଏ । ଦୈବକ୍ରମେ ଚୋରି କରିବାକୁ ସେଦିନ ଗୁହାଳରେ ଚୋରମାନେ ପଶିଲେ । ଗୁହାଳ ଭିତର ଖୁବ୍ ଅନ୍ଧାର । ସେମାନେ କେଉଁ ମେଣ୍ଢା କମିତି ତା' ଦେଖି ପାରୁନଥିଲେ । ସେମାନେ ଜାଣିଥିଲେ ଯେ ଯେଉଁ

ମେଣ୍ଢାର ରୂମ ଶୀଘ୍ର ଉପୁଡ଼ି ଯାଏ । ତାହା ଭଲ ଜାତିର ମେଣ୍ଢା । ଅନ୍ଧାରରେ ସେମାନେ ସବୁ ମେଣ୍ଢାଙ୍କର ରୂମ ଟାଣିଲେ । ଜ୍ୱାଇଁର ମେଣ୍ଢା ପଲ ଭିତରେ ଥିଲା । ତା ଦେହରେ ଲାଗିଥିବା ଭୁଲା ବି ଟଣା ହେଲା । ତାହା ସହଜରେ ଉପୁଡ଼ି ଆସିଲା । ଚୋରମାନେ ଜ୍ୱାଇଁଟିକୁ ଭଲ ମେଣ୍ଢା ବୋଲି ଖପ୍ ଖପ୍ ଧରି । ତାକୁ କାନ୍ଧରେ ପକାଇ ଚୁପ୍ ଚୁପ୍ ଗୁହାଳରୁ ବାହାରି ଆସିଲେ ।

ଜ୍ୱାଇଁର ବାଳ ଗୁଡ଼ିକ ବେଶ୍ ଲମ୍ବା । ଯେଉଁ ଚୋର ତାକୁ କାନ୍ଧରେ ପକାଇଥାଏ, ତା' ପଛ ପଟେ ବାଳଗୁଡ଼ିକ ଖୁବ୍ ତଳକୁ ଲମ୍ବି ଆସିଥାଏ । ବାଟରେ ଗୋଟିଏ ନଈ ପଡ଼ିଲା । ନଈ ପାର ହେଲାବେଳେ ଜ୍ୱାଇଁର ବାଳ ନଈପାଣିକୁ ଲାଗି ଓଦା ହୋଇଗଲା । ସେ ଚିତ୍କାର କଲା—"ହେ ଲମ୍ବା ଗୋଡ଼ଆ ଚୋର । ମୋର ବାଳ ଓଦା ହୋଇ ଯାଉଛି ।"

ଏକଥା ଶୁଣି ଚୋରମାନେ ଛାନିଆ । ସେମାନେ ଭାବିଲେ—ମେଣ୍ଢାଟି ଦେହରେ ଭୂତ ପ୍ରବେଶ କରିଛି ! ସେଥିପାଇଁ ସେ ମଣିଷ ଭଳିଆ କଥା କହୁଛି । ଭୟରେ ସେମାନେ ଜ୍ୱାଇଁକୁ ପାଣିକୁ ଫିଙ୍ଗି ଦେଲେ । ପଛକୁ ଟିକିଏ ବି ଅନାଇଲେ ନାହିଁ । ପ୍ରାଣ ନେଇ ପଳେଇଲେ ।

ନଈଟି ଅଗଭୀର । ଜ୍ୱାଇଁଟିର ପାଣିରେ ପଡ଼ିବାରୁ ବହୁତ ଲାଭ ହେଲା । ଝୁଣା ଗୁଡ଼ ଓ ତା ଦେହରେ ଲାଗିଥିବା ଭୁଲା ଧୋଇ ହୋଇ ଭାସିଗଲା । ଏବେ ତା ଦେହ ସଂପୂର୍ଣ୍ଣ ପରିଷ୍କାର । ସେ ଆସି କୂଳରେ ବସିଲା ।

ରାତି ପାହାନ୍ତିଆକୁ ଶ୍ୱଶୁର ଦେଖିଲେ—ଜ୍ୱାଇଁ ଘରେ ନାହିଁ । କବାଟ ସବୁ ମେଲା । ଝୁଣା ଗୁଡ଼ ମାଠିଆ ଭଣା । ଘରଯାକ ଗୁଡ଼ରେ

ଘସୁଛି । ତାଙ୍କର ଭୟ ହେଲା । ସେମାନେ ଜ୍ୱାଇଁଙ୍କ ଖୁବ୍ ଖୋଜା-ଖୋଜି କଲେ । ଜ୍ୱାଇଁକୁ ନଈ କୂଳରେ ଦେଖି ସେମାନେ ଖୁସି । ତାକୁ ଶୀଘ୍ର ତା ଘରକୁ ପଠାଇ ଦେଲେ ।

—*—

# ଅନ୍ଧାରକଣା ଜ୍ୱାଇଁ

ସୁନ୍ତା କଣ୍ଠର ଗାଁ । ଜଣେ ଲୋକ ସେଇଠି ରହେ । ତାର ଦୁଇ ଝିଅ । ସେମାନେ ସୁନ୍ଦରୀ । ବଡଟିର ନାଁ ରୂପେଶ୍ୱରୀ । ସାନର ନାଁ ଗୁଣେଶ୍ୱରୀ ।

ରୂପେଶ୍ୱରୀର ବିବାହ ବୟସ ହୋଇଗଲା । ବାପା ତାର ଗାଁ ଗାଁ ବୁଲି ବର ଖୋଜିବାରେ ବ୍ୟସ୍ତ । କିନ୍ତୁ ମାର ଗୋଟିଏ ଜିଦ୍ । ଝିଅ ତାଙ୍କର ଗାଁରେ ବାହା ହେବ । ଝିଅଟି ମା'ର ଆଖିର ପୁଅ । ସେ ଗାଁରୁ ଚାଲିଗଲେ ସେ ଅନ୍ଧ ହୋଇଯିବ । ଛାତି ତାର ଫାଟିଯିବ ।

ମା'ର ଜିଦ୍ ଦେଖି ବାପା ତାର ଦୁଃଖିତ । ବାପ କହେ—"ଝିଅକୁ ଦୂରକୁ ଦେଲେ ଭଲ । ଗାଁ । କନଆ ସିଦ୍ଧାର୍ଣିନାକ । ଟିକିଏ କଥାରେ ଝିଅକୁ ଖୁଣିବେ । ସେ କଥା ବାପ ମାଙ୍କ ଦେହରେ ଯିବ ନାହିଁ । ସଂପର୍କ ଶକ୍ତ ହେବ ।" ମା କିନ୍ତୁ ତା କଥାରେ ଅଟଳ । ବାପ ମୁଣ୍ଡ ନୁଆଁଇଲା । ସେଇ ଗାଁର ଜଣେ ଯୁବକ ସାଥିରେ ରୂପେଶ୍ୱରୀର ବିବାହ ହେଲା ।

ଅନ୍ଧାରକଣା ଜ୍ୱାଇଁ

ରୂପେଶ୍ୱରୀର ସ୍ୱାମୀ ଅନ୍ଧାରକଣା । କିନ୍ତୁ ସେ ଖୁବ୍ ଧୂର୍ତ୍ତ । ସେଥିପାଇଁ ସେ ଯେ ଅନ୍ଧାର କଣା, କେହି କେବେ ଜାଣିପାରୁ ନ ଥିଲେ ।

ଜ୍ୱାଇଁଟି ଗରିବ । ନିଜର ବଳଦ ନାହିଁ । କିନ୍ତୁ ଜମି ଚାଷକରି ଚଳେ ! ଆଗେ ଏହାଠାରୁ ତାହାଠାରୁ ବଳଦ ମାଗି ହଳ କରୁଥିଲା । ବାହା ହେବା ପରେ ଶ୍ୱଶୁର ଘର ବଳଦ ନେଇ ଆସେ । ନିଜ କାମ ସରିଲେ ଫେରାଇ ଦିଏ ।

ସେଥର ଜ୍ୱାଇଁ ଘରେ ବଳଦ ଯୋଡ଼ି ପାଞ୍ଚ ଦିନ ରହିଗଲା । ଶ୍ୱଶୁରଙ୍କର ହଳ କରିବାକୁ ଦରକାର ପଡ଼ିଲା । ସେ ଜ୍ୱାଇଁ ପାଖକୁ ଖବର ଦେଲେ—କାମ ଯଦି ଆଉ ନ ଥାଏ, ତେବେ ଶୀଘ୍ର ବଳଦ ଫେରାଇ ଦେବ ।

ହଳରୁ ଫେରୁ ଫେରୁ ସେଦିନ ସନ୍ଧ୍ୟା । ଘରେ ପହଞ୍ଚୁ ପହଞ୍ଚୁ ରୂପେଶ୍ୱରୀ ସ୍ୱାମୀକୁ କହିଲା—"ବଳଦ ଦେଇ ଆସିବାକୁ, ବାପା ଖବର ପଠାଇଛନ୍ତି । ତୁମେ ଯାଇ ବଳଦ ଦେଇଆସ ।"

ସେ ତ ଅନ୍ଧାରକଣା । କେମିତି ବଳଦ ନେଇଯିବ, ତାର ସେ ଏକ ଚିନ୍ତା । ନ ଦେଲେ, ସ୍ତ୍ରୀ ତାଙ୍କୁ ବଳଦ ଦେଇ ଆସୁନ କୋଲି ପଚାରିବ । କ'ଣ ସେ ଉତ୍ତର ଦେବ ଠିକ୍ କରିପାରିଲା ନାହିଁ । ଶେଷକୁ ଭାବିଲା—ବଳଦକୁ ଫିଟାଇ ଦେଲେ, ସେମାନେ ତାଙ୍କ ଗୁହାଳକୁ ଚାଲିଯିବେ । ସେ ବି ତାଙ୍କ ଲାଞ୍ଜ ଧରି ଶ୍ୱଶୁର ଘରେ ପହଞ୍ଚିଯିବ । ଯାହା ଭାବିଥିଲା, ସେଇଆ କଲା । ବଳଦ ଦୁଇଟି ଫିଟିଯିବାରୁ, ସେମାନେ ଶ୍ୱଶୁର ଘରେ ଯେଉଁଠି ବନ୍ଧା ହୁଅନ୍ତି, ସେଠାକୁ ଚାଲିଗଲେ । ଜ୍ୱାଇଁଟି ବଳଦ ଦୁଇଟିକୁ ଖୁଣ୍ଟରେ

ବାନ୍ଧନ୍ତି, ପରେ ସେ ତ ଆଉ କିଛି ଦେଖି ପାରୁ ନ ଥିଲା । ସେଇଠି ଠିଆ ହୋଇ ରହିଲା ।

ଜ୍ୱାଇଁ ଖୁଣ୍ଟ ପାଖରେ ଠିଆ ହୋଇଛନ୍ତି। କୁଆଡ଼େ ଆଉ ଯାଉନାହାନ୍ତି । ଏହା ଦେଖି ଶ୍ୱଶୁର ବ୍ୟସ୍ତ ହୋଇ ଉଠିଲେ । ସେ ପଚାରିଲେ—"ପୁଅ, ସେଠି କ'ଣ କରୁଛ ?"

ଜ୍ୱାଇଁ କହିଲା—"ବଳଦକୁ ଖୁଣ୍ଟରେ ବାନ୍ଧୁଛି ।"

କିଛି ସମୟ ବିତିଗଲା । ତଥାପି ଜ୍ୱାଇଁଟି ସେଠୁ ଆସିଲା ନାହିଁ । ବୁଢ଼ାଟିକୁ ଭାରି ବ୍ୟସ୍ତ ଲାଗିଲା । ସେ ନିଜକୁ ଆଉ ସମ୍ଭାଳି ପାରିଲେ ନାହିଁ । ବାଧ୍ୟ ହୋଇ ପୁଣି କହିଲେ "ଡେରି ଆଉ କର ନାହିଁ । ଶୀଘ୍ର ଚାଲିଆସ । ଦି'ଟା ଖାଇ ଦେଇ ଘରକୁ ଚାଲିଯିବ ।"

ଜ୍ୱାଇଁଟି କହିଲା—"ବଳଦ ବନ୍ଧା ସରିଲାଣି । ଆପଣଙ୍କର କେତେ ଗାଈ ଅଛନ୍ତି, ତାକୁ ଦେଖୁଛି ।"

"ସେସବୁ ଦେଖିବାର କ'ଣ ଅଛି ? ଯାହା ଭଲ ଗାଈ ଥିଲେ, ସେ ସବୁ ମରିଗଲେ । ତୁମେ ସେଠୁ ଚାଲିଆସ ।" ଏତିକି କହି ଶ୍ୱଶୁର ଘରକୁ ଗଲେ । ଗୁଣେଶ୍ୱରୀକୁ କହିଲେ—"ଆଲୋ-ମା ! ଜ୍ୱାଇଁ ଆସିଛନ୍ତି, ପାଣି ଢାଳେ ତାଙ୍କୁ ଗୋଡ଼ ଧୋଇବାକୁ ଦେ ।"

ଏହା ଭିତରେ ଅଣ୍ଡାଳି ଅଣ୍ଡାଳି ଜ୍ୱାଇଁଟି ପିଡ଼ାକୁ ଆସିଲା । କିନ୍ତୁ ଅଗଣାକୁ ସେ ବାଟ ପାଇଲା ନାହିଁ । ପୁଣି ବାଟ ପାଇଁ ହାତୁ ଅଣ୍ଡାଳିଲା । ଏତିକିବେଳେ ଗୁଣେଶ୍ୱରୀ କହିଲା—"ଭାଇ, ଏଠି ପାଣି ରହିଲା । ଆସି କରି ଗୋଡ଼ ଧୁଅ ।"

ଏହା ଶୁଣି ଜ୍ୱାଇଁଟି କହିଲା—"ତୁ ତ ମୋର ସାନ ଶାଳୀ । ତୋର ଏମା କଥା ମାନିବା ଉଚିତ । ମୋର ହାତ ଧରି ତୁ ଯଦି ଏଠୁ ମୋତେ ନ ନେବୁ ମୁଁ ଜମା ଚଳିବି ନାହିଁ ।"

ଗୃହେଣଶୁଙ୍ଘ ଘର ସରକା ଛନ୍ଦ କପଟ ମାଖରେ ସେ ପଡେ଼ ନାହିଁ । ଭଉଣୋଇର କଥା ଶୁଣି ତା ପାଖକୁ ଧାଇଁ ଆସିଲା । ତାର ହାତ ଧରି ଅଗଣାକୁ ନେଇଗଲା । ପାଣି କେଉଁଠି ଅଛି ଭଉଣୋଇଟି ଦେଖିବାକୁ ଅକ୍ଷମ । ସେଇଠୁ ସେ ଗେହ୍ଲେଇ ହୋଇ କହିଲା—"ତୁ ମୋତେ ପ୍ରକୃତରେ ଭଲ ପାଉ ନାହିଁ । ନହେଲେ ତୁ କଣ ପାଣି ସେଠି ରଖିଥାନ୍ତୁ ? ତୁ ଟିକିଏ ପାଖରେ ପାଣି ଢାଳି ଦେଲେ ମୁଁ ସେଥିରେ ହାତ ଗୋଡ଼ ଧୋଇ ଦେବ ।"

ଗୃହେଣଶୁଙ୍ଘ ପାଣି ଢାଳିଲା । ଭଉଣୋଇ ତାର ହାତ ଗୋଡ଼ ଧୋଇଲା ।

ରନ୍ଧା ବଢ଼ା ସରିଲା । ଶୁଶୁଢେ ଜ୍ୱାଇଁକୁ ଖାଇବାକୁ ଆଉ ଘରକୁ ଡାକିଲେ । ଜ୍ୱାଇଁ କହିଲା—"ଆଜି ହଳ କରି କରି ମୁଁ ହାଲିଆ । ଗୋଡ଼ ହାତ ଦରଜ । ଦେହ ଚଳୁ ନାହିଁ । ମୁଁ ଯାଇ ସେଠି ଖାଇବା ଅପେକ୍ଷା, ଏଇଠି ମୋତେ ଖାଇବାକୁ ଦେଇ-ଦେଲେ ଭଲ ହୁଅନ୍ତା ।" ଶାଶୁ ଜ୍ୱାଇଁର କଥା ରଖିଲେ । ଖାଇବା ଆଣି ପରଶିଲେ ।

ଜ୍ୱାଇଁ ଉପର ଆଲୁଅରେ କିଛି ଦେଖି ପାରିଲା ନାହିଁ ; ଠକା ହୋଇ ବସି ରହିଲା । ତାର ଏ ଢଙ୍ଗ ଦେଖି ଗୃହେଣଶୁଙ୍ଘ ଆଶ୍ଚର୍ଯ୍ୟ । ସେ କହିଲା—"ଭାଇ ବସିଲ କାହିଁକି ? ଖାଉନ ।"

ଜ୍ୱାଇଁଟି କହିଲା—"ତୁ ତ ଅଳ୍ପଦିନ ପରେ ମୋର ଘରକୁ ଯିବୁ । ଏତା ସାଥୀରେ ଆଉ ଦେଖା ହେବନାହିଁ, ଯେତେଦିନ ଏଠି ଅଛୁ ସେତା ଠାରୁ ଶ୍ରଦ୍ଧା ସ୍ନେହ ଯାହା ମିଳିବ । ତାପରେ ସେ ସବୁ ସ୍ୱପ୍ନ ହୋଇଯିବ । ଆଜି ଗୋଟିଏ କଥା କର । ମୋ ହାତକୁ ନେଇ ଖାଇବା ଜିନିଷରେ ଲଗାଇ ଦେ । ଏଥିରେ ମୋ ଆତ୍ମା ତୃପ୍ତି ହେବ ।"

ଗୁଣ୍ଡେଶ୍ୱର ଭଉଣୀଙ୍କର ହାତ ନେଇ ଖାଇବା ପାଇଁରେ ଲଗାଇ ଦେଲା । ସେ ତ ଆଉ ପିଲା ନୁହଁ । ଭଉଣୀଇ ଆଗରେ ବସିବାକୁ ତାକୁ ସଙ୍କୋଚ ଲଗିଲା । ଭଉଣୀଇ ଯେପରି ଖାଇବା ଆରମ୍ଭ କରିଛୁ ସେ ସେଠୁ ଚାଲିଗଲା ।

କିଛି ସମୟ ପରେ ଶାଶୁ ଆସିଲେ । ସେ ଦେଖିଲେ– ଜ୍ୱାଇଁଙ୍କ ଥାଳିରୁ ବଗଡ଼ିଟି ବି ଖାଉଛି । ସେ କହିଲେ—"ପୁଅ, ତମ ଥାଳିରୁ ବଗୁଡ଼ିଟିଏ ଖାଉଛି । ତୁମେ କ'ଣ ଏଇଟା ଦେଖି ପାରୁନ ? ତାକୁ ବାଡ଼େଇ ହୁରୁଡ଼ାଇ ଦିଅ ।"

ଜ୍ୱାଇଁଟି ବେଶ୍ ଚାଲାକ । ସେ ଯେ ଅନ୍ଧାରକଣା, ସେ କଥା କେହି ନ ଜାଣନ୍ତୁ । ଏହାହିଁ ତାର ଇଚ୍ଛା । ସେଥିପାଇଁ କଥାଟା ବାଁରେଇ ଦେଇ କହିଲା—"ମୁଁ ଏକୁଟିଆ ଖାଇବାକୁ ଭଲ ପାଏ ନାହିଁ । ବଗଡ଼ ବି ଗୋଟିଏ ଜୀବ । ତାଠାରେ ବି ଭଗବାନ ଅଛନ୍ତି । ସେ ମୋ ସାଥିରେ ଖାଉ । ସବୁ ଜୀବଜନ୍ତୁମାନେ ମଣିଷ ସାଥିରେ ସମାନ୍ତର ହୋଇ ଚଳନ୍ତୁ । ସମାନ ସୁବିଧା ଓ ସୁଯୋଗ ନିଅନ୍ତୁ । ଏହାହିଁ ମୁଁ ଚାହେଁ ।"

ଶାଶୁ କହିଲେ—"ନାଇଁ ପୁଅ, ବଗଡ଼ ଖାଇବା ଥାଳି ଅପରିଷ୍କାର କରୁଛି । ତାକୁ ହୁରୁଡ଼ାଇ ଦିଅ । ଆଶ୍ଚର୍ଯ୍ୟ ! ତୁମେ କିପରି ତା ଖାଇବାକୁ ଘୃଣା କରୁନାହଁ ।" ତାପରେ ସେ ବାଡ଼ିଟିଏ ଆଣି ବଗଡ଼କୁ ହୁରୁଡ଼ାଇ ଦେଲେ । ବାଡ଼ିଟିକୁ ଜ୍ୱାଇଁକୁ ଧରାଇ ଦେଇ କହିଲେ—"ଏଥର ବଗଡ଼ ଆସିଲେ, ତାକୁ ଏଇ ବାଡ଼ିରେ ପାହାରେ ଦେବ । ଯେମିତି କି ସେ ଆଉ ପାଖକୁ ଆସିବାକୁ ସାହସ କରିବ ନାହିଁ ।" ତାପରେ ଶାଶୁ ଅନ୍ୟ ଘରକୁ ଚାଲିଗଲେ ।

ଶାଶୂ ଆଜ କଟୁ ଖାଇବା ଜନିଷ ଧରି ଜ୍ୱାଇଁ ପାଖକୁ ଆସିଲେ । ତା ଥାଳିରେ ପରଶିବା ବେଳେ ଧେ ହେଲା । ସେ ଧେ ଶୁଣି ଜ୍ୱାଇଁଟି ଭାବିଲା—ପୁଣି ବିରାଡ଼ି ଆସି ଥାଳିରୁ ଖାଇଲାଣି । ଶାଶୂ ଦେଖିଲେ ଅସନ୍ତୁଷ୍ଟ ହେବେ । ସେ ଆଉ ଅପେକ୍ଷା କଲା ନାହିଁ । ବାଁ ହାତରେ ଧରିଥିବା କାଡ଼ରେ ଶାଶୂ ହାତକୁ ପାହାରେ ଦେଲା । ପାହାରଟି ବେଶ୍ କାଠିନ । ଶାଶୂ ସେଠୁ ବସି ପଡ଼ି କାନ୍ଦ ପକାଇଲେ । ସେ କହିଲେ···"ପୁଅ, କଣ କଲ ? ମୋ ହାତକୁ ବାଡ଼ିରେ ପିଟିଲ ?"

ଏକଥା ଶୁଣି ଜ୍ୱାଇଁଟି ଲଜ୍ଜାରେ ମରିଗଲା । ମନରେ ତାର ଅଶେଷ ଦୁଃଖ । ସେ ବିବ୍ରତ । ବ୍ୟସ୍ତ । ଶାଶୂ ହାତକୁ ଧରି ପକାଇ କହିଲା—"ମା ! ମୁଁ ଖାଉ ଖାଉ ଶୋଇ ପଡ଼ିଲି । ସ୍ୱପ୍ନରେ ଦେଖୁଥିଲି ଯେ ବିରାଡ଼ି ପୁଣି ମୋ ଥାଳିରୁ ଖାଉଛି । ସେଥିପାଇଁ ତାକୁ ବାଡ଼ିରେ ପାହାରେ ଦେଲି । ତାହା ଭୁଲ ବଶତଃ ତମ ହାତରେ ବାଜିଲା । ତୁମେ ମୋର ଶାଶୂ । ସମ୍ମାନସ୍ପଦ । ଅଜ୍ଞାତରେ ଯେଉଁ ଦୋଷ କଲି, ସେଥିପାଇଁ ମୁଁ ଦୁଃଖିତ । ଅନୁତପ୍ତ । ମୋତେ କ୍ଷମାକର । ମୋତେ ଲଜ୍ଜା ମାଡ଼ୁଛି । ମୋତେ କଥା ଦିଅନ୍ତୁ, ଏକଥା ଯେପରି କେହି ଜାଣିବେ ନାହିଁ ।"

ବୁଢ଼ୀ କହିଲା—"ଯାହା ହେବାର ହୋଇଗଲାଣି । ବ୍ୟସ୍ତ ହୋଇ ଲଭ ନାହିଁ ।"

ଜ୍ୱାଇଁ ଏ ଘଟଣା ନେଇ ଖୁବ୍ ଲଜ୍ଜିତ । ଶ୍ୱଶୁର ଶାଶୂଙ୍କୁ ମୁହଁ ଦେଖାଇବାକୁ ସେ କୁଣ୍ଠିତ । ସେ ଭାବିଲା— ଏଠୁ ପଳାଇଲେ କେବଳ ରକ୍ଷା । ଏକଥା ମନେ ମନେ ଯେମିତି ସ୍ଥିର କରିଛୁ, ସେ ସିଧା ସେଠୁ ଚୁପ୍‌କିନେ ପଳାଇଗଲା । ହେଉଷେଇ ଘର ପାଖରେ

କୋଉଠାଟା ଗଛ ଅଛି । ଯେଉଁଠି ପଡ଼ିଥିଲା । ସେଇଠି ସେ ବସି-ପଡ଼ି ଭାବିଲା—ସେ ଜଙ୍ଗଲରେ ପଡ଼ିଯାଇଛି ! ରାତିଟା ଏଠି କଟାଇ ଦେବ । ସକାଳ ହେଲେ ଘରକୁ ଯିବ ।

ଶ୍ୱଶୁର ଶାଶୁ ଘରେ ଜ୍ୱାଇଁକୁ ନ ଦେଖି ଭାବିଲେ—"ତାଙ୍କ ଘର ତ ଏଇ ପାଖରେ । ଘରକୁ ବୋଧେ ଚାଲିଗଲେ ।"

ଶ୍ୱଶୁର ଖାଇ ପିଇ ଶୋଇଲେ । ଶାଶୁ ଖାଇ ସାରି ବାସନ ସବୁ ଧୋଇଲେ । ବାସନ ଧୁଆ ପାଣିକୁ ଝରକା ବାଟେ ବାହାରକୁ ଫିଙ୍ଗି ଦେଲେ । ଜ୍ୱାଇଁ ଯେଉଁଠି ବସିଥିଲା, ସେଇଠି ସେ ପାଣି ପଡ଼ିଲା । ବିଚରା ଜ୍ୱାଇଁଟି ଭାବିଲା—ବର୍ଷା ଆସିଗଲା । ତେଣୁ ସେ ହାତ ଯୋଡ଼ି ଇନ୍ଦ୍ର ଦେବତାଙ୍କୁ ଜୁହାର କରି କହିଲା—"ହେ, ଇନ୍ଦ୍ର ଦେବତା ! ଅନ୍ଧାରି କଣା ପ୍ରତି ଟିକିଏ ଦୟା କର । ଆଜି ରାତିରେ ବର୍ଷା ଆଉ ନ ହେଉ । ଜନମଯାକ ଏ ହତଭାଗ୍ୟ ବହୁତ ହଇରାଣ ହେଲାଣି । ଆଉ ଯେପରି ହଇରାଣ ନ ହୁଏ, ସେଥିପାଇଁ ଦୟା କର ।"

ଜ୍ୱାଇଁର କଥା ସବୁ ଶାଶୁ ଶୁଣିପାରିଲେ । ସବୁ କଥା ଜାଣିବାକୁ ତାଙ୍କୁ ଅସୁବିଧା ଆଉ ହେଲା ନାହିଁ । ସେ ଯାଇ ସ୍ୱାମୀଙ୍କୁ ତାଙ୍କର ଉଠାଇଲେ । ବୁଢ଼ାବୁଢ଼ୀ ଆସି ଜ୍ୱାଇଁକୁ ଘରକୁ ନେଲେ । ଧୁଆ ଧୋଇ ହେବାକୁ ତାଙ୍କୁ ପାଣି ଦେଲେ । ପିନ୍ଧିବାକୁ ଭଲ ଲୁଗା ଦେଲେ ।

ଜ୍ୱାଇଁଟି ଯନ୍ତ୍ରଣାରେ ପଡ଼ି ଭାବୁଥିଲା—ସତ ନ କହି ଗୁଲ୍ପ କରି କେତେ ହଇରାଣ ହେଲି । ସତ କହିଲେ, ଅସୁବିଧା ହୁଏ ନାହିଁ । ଲଜ୍ଜିତ ହେବାର ପ୍ରଶ୍ନ କେଉଁଠୁ ଉଠୁଛି ?



# ବଗ ଓ ବ୍ରାହ୍ମଣ

ବହୁଦିନ ତଳେ ଗୋଟିଏ ବ୍ରାହ୍ମଣ ଥିଲା । ତାର ପିଲାଛୁଆ କେହି ନ ଥିଲେ । ସେ ତାର ସ୍ତ୍ରୀ ସହିତ ସୁଖରେ ଦିନ କାଟୁଥିଲା ।

ଦିନେ ସକାଳୁ ସକାଳୁ ପାଖ ଗାଁକୁ ସେ ଯାଉଥିଲା । ବାଟରେ ଗୋଟିଏ ପୋଖରୀ ପଡ଼େ । ତାର କୂଳରେ ସେ ଦେଖିଲା—ବଗଟିଏ ଠିଆ ହୋଇଛି । ଥଣ୍ଟରେ ତାର ଗୋଟିଏ ବଡ଼ ମାଛ । ତାକୁ ସେ ଗିଳିବାକୁ ଚେଷ୍ଟା କରୁଛି । କିନ୍ତୁ ସେ ପାରୁନାହିଁ । ମାଛଟିକୁ ଦେଖି ବ୍ରାହ୍ମଣର ଲୋଭ ହେଲା । ସେ ଲୋଭ ସମ୍ଭାଳି ପାରିଲା ନାହିଁ । ବଗ ପାଖକୁ ଧାଇଁଗଲା । ମାଛଟି ବେଶ ବଡ଼ । ତାକୁ ଥଣ୍ଟରେ ଧରି ଉଡ଼ି ପଳାଇବାକୁ ବଗଟି ଅକ୍ଷମ । ତା'ଛଡ଼ା ମାଛଟି ପ୍ରତି ତାର ଲୋଭ ବହୁତ । ମାଛଟିକୁ ସେଠି ପକାଇ ଉଡ଼ିବାକୁ ସେ ନାରାଜ । ତାକୁ ଅନ୍ୟ କିଛି ଉପାୟ ଦେଖାଗଲା ନାହିଁ । ସେ ଚୁପ୍ ହୋଇ ସେଠାରେ ଠିଆ ହୋଇ ରହିଲା ।

ବଗଟି କାଳେ ଉଡ଼ି ପଳେଇବ, ସେଥିପାଇଁ ବ୍ରାହ୍ମଣ ଭାରି ହୁସିଆର । ବଗ ପାଖରେ ପହଞ୍ଚି ମାଛଟିକୁ ସେ ଝାମ୍ପି ନେଲା ଟିକିଏ ବି ଅପେକ୍ଷା ନକରି ପଳାଇଗଲା ।

ଏ ଘଟଣାଟିରେ ବଗ ଖୁବ୍ ରାଗିଗଲା । ସେ ଭାବିଲା—ମାଛ ଛଡ଼ାଇ ନେବା ଲୋକଟି ଗୋଟିଏ ବ୍ରାହ୍ମଣ । ସେ ତ ବିଜ୍ଞ । ପରଧନ ଲୁଣ୍ଠନ କରିବା ମହାପାପ । କ୍ଷୁଧାର୍ତ୍ତଙ୍କୁ ଆହାର ଦେବା ଧର୍ମ ।

ପର ଜିନିଷ ପ୍ରତି ଲୋଭ କରିବା ଅନ୍ୟାୟ । ସବୁ ଜାଣିବା ସତ୍ତ୍ୱେ, ସେ ଲୋଭରେ ତା ମୂର୍ଖାଁଙ୍କୁ ଅନ୍ଧାର ଛଡ଼ାଇ ନେଲା । ଏ ଦୋଷ ତା'ର କ୍ଷମଣୀୟ ନୁହେଁ । ଘୃଣା ଓ ଲଜ୍ଜାରେ ତା'ର ମନ ଛଟପଟ ହୋଇ ଉଠିଲା । ଖାଇବାକୁ ଆଉ ତାର ଇଚ୍ଛା ହେଲା ନାହିଁ । ସେଥିପାଇଁ ସେ ମାଛ ଆଉ ଧରିଲା ନାହିଁ । ସେଇମିତି ସେଇଠାରେ ସେ ଠିଆ ହୋଇ ରହିଲା । ଏଇମିତି ଭାବରେ ସେ ମରିବ ବୋଲି ସ୍ଥିର କରି ନେଲା ।

ମାଛଟିକୁ ଧରି ବ୍ରାହ୍ମଣ ଘରେ ଆସି ହାଜର । ବ୍ରାହ୍ମଣୀ ମାଛଟିକୁ ଦେଖି ଭାରି ଖୁସୀ । ତାକୁ ସେ ବନେଇ ରାନ୍ଧିଲା । ଆନନ୍ଦରେ ସ୍ୱାମୀ ଓ ସ୍ତ୍ରୀ ଉଭୟେ ମାଛଟିକୁ ଖାଇଲେ ।

ସେଇଦିନୁ ଯେବେ ବ୍ରାହ୍ମଣଟି ବଗ ହାବୁଡ଼େ ପଡ଼େ, ବଗଟି ତାକୁ ଅଭିଶାପ ଦିଏ—"ମୋତେ ଭୁ ହନ୍ତସନ୍ତ କଲୁ । ତୋ ଜୀବନ ବି ସେଇଆ ହେଉ ।"

ନିଜ ଜିଦ୍‌ରେ ବଗଟି ଅଟଳ ରହିଲା । ଅନାହାରରେ ରହି-ରହି ବଗଟି ଦିନେ ଟଳି ପଡ଼ିଲା ।

ଏଇ ଘଟଣାର ଏକ ବର୍ଷ ପରେ ବ୍ରାହ୍ମଣର ପୁଅଟିଏ ହେଲା । ପିଲାଟି ଦିବ୍ୟସୁନ୍ଦର । ସେଇଦିନୁ ବ୍ରାହ୍ମଣ ଦମ୍ପତିଙ୍କର ଆନନ୍ଦ ଭାସିଲେ ନସରେ ।

ବେଳ କାହାକୁ ଅପେକ୍ଷା କରେ ନାହିଁ । ଦିନ ଗଡ଼ି ଚାଲିଲା । ବଢ଼ୁ ବଢ଼ୁ ପିଲାଟି ଯୁବକ ହୋଇଗଲା । ସବୁ ଶାସ୍ତ୍ରରେ ସେ ସୁପଣ୍ଡିତ । ଗୁଣରେ ସେ ବି କିଛି କମ୍ ନୁହଁ । ଅସାଧାରଣ ତାର ବୁଦ୍ଧି । ଏପରି ପୁଅ ପାଇ ବାପା ଓ ମା ନିଜକୁ ଧନ୍ୟ ମନେ କରନ୍ତି ।

ପୁଅ ଘର ଓ ବାହାରର ସମସ୍ତ ଦାୟିତ୍ୱ ତୁଲାଏ । ବ୍ରାହ୍ମଣ ଓ ବ୍ରାହ୍ମଣୀ ପୁଅ ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି ।

ରୋଗ ବ୍ୟାଧି କିଛି ନାହିଁ । ହଠାତ୍ ଦିନେ ପୁଅଟି ମରିଗଲା । ବିନା ମେଘରେ ବଜ୍ରପାତ । ବ୍ରାହ୍ମଣ ଓ ବ୍ରାହ୍ମଣୀ କାଠ ପାଲଟି ଗଲେ । ତାଙ୍କର ଜ୍ଞାନ ଆସିବାକୁ କିଛି ସମୟ ଲାଗିଲା । ସେତିକି-ବେଳକୁ ସେମାନେ କାନ୍ଦିଲେ । କି ଦୁଃଖଦ ସେ କାନ୍ଦ ! ଦେଖିଲେ ପଥର ବି ତରଳି ଯିବ । ଯେ ଯେତେ ସେମାନଙ୍କ ପାଖକୁ ଆସିଲେ ସମସ୍ତେ ସାନ୍ତ୍ୱନା ଦେଲେ । ସେଥିରେ କି ସେମାନେ ବୁଝନ୍ତି । ସେଇ-ଦିନୁ ବ୍ରାହ୍ମଣୀ କହିଗଲାଣି ! ପୁଅ ପୁଅ ବୋଲି ସବୁବେଳେ ଡାକେ । ଅନ୍ନ ଜଳ ସ୍ପର୍ଶ କରିବାକୁ ଅନିଚ୍ଛୁକ । ବ୍ରାହ୍ମଣ କଥା ତ ଗୁଡ଼ା ! ମୁଣ୍ଡର ତା'ର ହାତ ବାହାରେ ନାହିଁ । ତଥାପି ସ୍ତ୍ରୀକୁ ସେ ଖୁବ୍ ବୁଝାଏ । ଜବରଦସ୍ତି କରି ଦି'ଟା ଖୁଆଏ । ଜାଣେ, ସେ ଯଦି ତତ୍ତ୍ୱ ନ ନେବ, ବୁଢ଼ୀଟା ମରିଯିବ । କେବେ କେବେ ତାର ରାଗ ହୁଏ । ସେ ଭାବେ—ଯମ ତା ପ୍ରତି ଅନ୍ୟାୟ କରିଛନ୍ତି । ବିନା ଦୋଷରେ ପୁଅକୁ ତାର ଛଡ଼ାଇ ନେଲେ । ଏଭଳି ଅନ୍ୟାୟ ଧର୍ମରାଜଙ୍କ ପକ୍ଷେ ଶୋଭା ପାଏ ନାହିଁ । ସେ ଶେଷକୁ ସ୍ଥିର କଲା—ଯମ ରାଜାଙ୍କୁ ଠିକଣା କରି ପାଠେ ଦେବ । ଫଳରେ ଯମ ରାଜା କାହା ପ୍ରତି ଆଉ ଅନ୍ୟାୟ କରିବେ ନାହିଁ ।

ପରଦିନ ସକାଳୁ ବ୍ରାହ୍ମଣ ଧ୍ୟାନରେ ବସିଲା । ଯମରାଜାଙ୍କର ନାମକୁ ସେ ଜପ କଲା । ତା ସାଙ୍ଗେ ନିଜର ଦୁଃଖକୁ ସେ ବାରମ୍ବାର ଖୁବ୍ ଜୋରରେ ଚିଠୁଥିଲା । ଧାରାବାହିକ ଭାବରେ । ଯେପରି ତ୍ରିଙ୍କି ର ଫାହାର ପଡ଼େ । ଏହି ଶବ୍ଦ ଅନବରତ ଯମରାଜାଙ୍କ କାନରେ ପଡ଼ୁଥିଲା । ଏହା ବିରକ୍ତିକର । ଯମରାଜା ବ୍ୟତିବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଲେ । କୌଣସି କାର୍ଯ୍ୟ ସେ ମନଧ୍ୟାନ ଦେଇ କରିପାରିଲେ

ନାହିଁ । ଏ ଶବ୍ଦ ତାଙ୍କ କାନରେ ନ ପଡ଼ିବା ପାଇଁ ସେ ବହୁ ଚେଷ୍ଟା କଲେ । ସବୁ ନିଷ୍ଫଳ ହେଲା । ଅନ୍ୟ ଉପାୟ ନ ପାଇ ସେ ବ୍ରାହ୍ମଣ ପାଖରେ ପହଞ୍ଚିଲେ । ସେତେବେଳକୁ ମଧ୍ୟରାତ୍ର । ବ୍ରାହ୍ମଣଟି ଶୋଇ ଯାଇଥିଲା ।

ଯମରାଜା ଜାଣନ୍ତି । ସେ ବ୍ରାହ୍ମଣଟି ଅବୁଝା । ବୁଝାଇଲେ ସେ ବୁଝିବ ନାହିଁ । ବରଂ ସେ ଯେମିତି ରହିଛି, ସେମିତି ରହିଯାଉ । ଫଳରେ ସେ ଧକ୍କା ଖାଇବ । ବଳେ ବଳେ ତା'ର ଦୋଷ ସେ ବୁଝିପାରିବ । ଏଇଥିପାଇଁ ଯମରାଜା ବ୍ରାହ୍ମଣକୁ ସ୍ୱପ୍ନରେ କହିଲେ "ତୁମେ ପୁଅ ପାଇଁ ବହୁତ ବ୍ୟସ୍ତ । ତା'କୁ ଯଦି ଦେଖିବାର ତମର ଇଚ୍ଛା, କାଲି ସକାଳେ ଠାକୁର ଘର ଭିତରୁ ବନ୍ଦ କରି ତୁମେ ଶୋଇବ । ତା ପୂର୍ବରୁ ସ୍ତ୍ରୀକୁ ତମର ସାବଧାନ କରି ଦେଇ ଥିବ ଯେ ତିନିଦିନ ଭିତରେ ତମକୁ ସେ ଉଠାଇବ ନାହିଁ କି ଠାକୁର ଘର କବାଟ ଖୋଲିବ ନାହିଁ । ଏହା ସେ କଲେ, ତୁମେ ଆଉ ଜୀବନ ପାଇବ ନାହିଁ ।"

ବ୍ରାହ୍ମଣର ନିଦ ଭାଙ୍ଗିଗଲା । ସେ ଉଠି ବସିଲା, ଯମରାଜା ଯାହା କହିଥିଲେ, ସେସବୁ ତାର ପରିଷ୍କାର ଭାବରେ ମନେ ଥିଲା । ସେ ତା'ର ସ୍ତ୍ରୀକୁ ଉଠାଇ ସେସବୁ କହିଲା । ତା'ର ତ ମନ ଲାଗିଛି, ରାତିରେ ତାକୁ ଆଉ ନିଦ ହେଲା ନାହିଁ । ଭୋରରୁ ସେ ତାର ନିତ୍ୟକର୍ମ ସାରିଲା, ପୂଜା ଅର୍ଚ୍ଚନା କଲା । ତାପରେ ଠାକୁର ଘର ଭିତର ପଟୁ କବାଟ ଦେଇ ଶୋଇଗଲା ।

ନିଜକୁ ଲମ୍ବାଇ ଲମ୍ବାଇ ତାର ଆଖି ବୁଜି ହୋଇଗଲା । ଯମଦୂତମାନେ ତାର ଆତ୍ମାକୁ ନେଇଗଲେ । ଯମରାଜାଙ୍କ ପାଖକୁ ଯିବା ବାଟରେ ଯମପୁର । ସେଠାରେ ସବୁଠି ଦଣ୍ଡର ବିଧାନ । ସେ

ଦଣ୍ଡ ଜଳୁଥାଏ । ସେଠାକାର ଦୃଶ୍ୟ ଅତ୍ୟନ୍ତ ଭୟଙ୍କର, ଅସହ୍ୟ, ଲୋମହର୍ଷକ । କେଉଁଠି ପାପୀଙ୍କ ଗଣ୍ଡିକୁ ଗଣ୍ଡି କଣ୍ଟ ହେଉଛି ତ କେଉଁଠି ଜଳନ୍ତା ଚୁଲ୍ଲିରେ ସେମାନଙ୍କୁ ବସା ହେଉଛି । ଅନ୍ୟଠି ଯମଦୂତମାନେ ସେମାନଙ୍କର ଗୋଡ଼କୁ ଧରି ମୁଣ୍ଡକୁ ଲୁଣ ପାଣିରେ ବୁଡ଼ାଉଛନ୍ତି ।

ଆଜି ଏକ ଜାଗାରେ ନାଲି ଟକ୍ ଟକ୍ ତତଲା ଲୁହା କଣ୍ଟାରେ ମିଛୁଆଙ୍କ ଜିଭକୁ ଟାଣି ଦିଆ ହେଉଛି । ସମଗ୍ର ଯମପୁର ପାପୀ ଓ ବିକଟାଳ ଯମଦୂତରେ ପୂର୍ଣ୍ଣ । ସବୁଠି ଯନ୍ତ୍ରଣା, ଚିତ୍କାର ଓ କ୍ରନ୍ଦନ । ସବୁ ମର୍ମଭେଦୀ । ସବୁ ମର୍ମନ୍ତୁଦ । ବ୍ରାହ୍ମଣ ଏ ଦୃଶ୍ୟ ଦେଖି ତଟସ୍ଥ । ଭୟରେ ସେ ଥରିବାକୁ ଲାଗିଲା । କିନ୍ତୁ ଯମଦୂତମାନେ ତାକୁ ଆଗେଇ ନେଇ ଯମରାଜାଙ୍କ ପାଖରେ ହାଜର କଲେ ।

ବ୍ରାହ୍ମଣକୁ ଦେଖି ଯମରାଜା କହିଲେ—"ତୁମର ପୁଅ ଏଠି ଅଛି । ତୁମେ ତାକୁ ଦେଖିବାକୁ ଆସିଛ । ତେଣୁ ତମର ଭୟ କରିବାର କିଛି ନାହିଁ । ତୁମେ ନର୍କପୁରରେ ପୁଅକୁ ତମର ଖୋଜ । ତା ସାଥିରେ କଥାବାର୍ତ୍ତା କର ।"

ବ୍ରାହ୍ମଣ ଏ ଭୟଙ୍କର ଦୃଶ୍ୟ ସବୁ ଦେଖି ସ୍ତମ୍ଭିତ । ଏହା ଆଖିରୁ ତାର ସ୍ପଷ୍ଟ ଜଣାପଡ଼ୁଥିଲା । ଯମରାଜାଙ୍କ ଅଭୟବାଣୀ ଶୁଣିବା ପରେ ମଧ୍ୟ ତା ମନର ଅବସ୍ଥାର ପରିବର୍ତ୍ତନ ହେଲା ନାହିଁ ।

ମନରେ ତାର ଭୟ ଭରିଯାଇଛି, ଯମରାଜା ଏହା ଲକ୍ଷ୍ୟ କଲେ । ସେ କହିଲେ—"ହେ ବ୍ରାହ୍ମଣ ! ତମର ଏଠି ଡରିବାର କିଛି ନାହିଁ । ତଥାପି ତୁମେ ଭୟରେ କାବୁ । ଏମିତି ହେଲେ, ସମସ୍ତ ଗଡ଼ିଯିବ । ତୁମେ ତୁମ ପୁଅକୁ ଦେଖିପାରିବ ନାହିଁ । ଆସିବା । ବୃଥା ହୋଇଯିବ ।"

ଯମରାଜାଙ୍କର ଏପରି ଆଶ୍ୱାସନାରେ ବି ବ୍ରାହ୍ମଣର ପରିବର୍ତ୍ତନ କିଛି ହେଲା ନାହିଁ । ସେ ସେମିତି ଭାବରେ ଠିଆ ହୋଇଥାଏ । ଯମରାଜା ବ୍ରାହ୍ମଣର ମନର ଅବସ୍ଥା ଲକ୍ଷ କରି ତାଙ୍କୁ କହିଲେ—"ଏଇ ଦେଖ. ସେଠି କେତେକ ଯୁବକ ଠିଆ ହୋଇଛନ୍ତି । ତୁମେ ସେଠାକୁ ଯାଅ, ଦେଖ । ତୁମର ପୁଅ ସେଠାରେ ଥିବ ।"

ବ୍ରାହ୍ମଣଟି ଯୁବକମାନଙ୍କୁ ଲକ୍ଷ୍ୟ କଲା । ତା'ର ନଜର ପୁଅ ଉପରେ ଯେମିତି ପଡ଼ିଛି, ସେ ଖୁବ୍ ଖୁସି ହୋଇଗଲା । ଆନନ୍ଦରେ ଭୟ ସବୁ ତାର କୁଆଡେ଼ ମିଳାଇଗଲା । ପୁଅକୁ ଦେଖି ସେ ସ୍ଥାନ, କାଳ, ପାତ୍ର ସବୁ ଭୁଲି ତା' ପାଖକୁ ଦୌଡ଼ିଗଲା । ଯେମିତି ପାଖ ହୋଇ ଯାଇଛି ସେ ବଡ଼ପାଟିରେ ପୁଅକୁ ଡ଼ାକିଲା । କିନ୍ତୁ ଆଶ୍ଚର୍ଯ୍ୟ ! ପୁଅ ତାର ଡ଼ାକ ଶୁଣି ନ ଶୁଣିଲା ପରି ରହିଲା । ତାକୁ ଆଉ ଆଖିରେ ବି ଅନେଇଲା ନାହିଁ । ଏଥି ବ୍ରାହ୍ମଣକୁ ଖୁବ୍ ବାଧିଲା । ସେ ଆଉ ସହି ପାରିଲା ନାହିଁ । ପୁଅ ଆଡ଼କୁ ମାଡ଼ିଗଲା । ପାଖରେ ପହଞ୍ଚି କହିଲା—"ବାପରେ, ମୁଁ ଏତେ କଷ୍ଟ ସହି ତୋ ପାଖକୁ ଆସିଛି, ତୁ ମୋତେ ଟିକଏ ଦେଖିଲେ ପଚାରୁ ନାହୁଁ ?"

ପୁଅଟି ନିରୁତ୍ତର । ବାପାକୁ ଟିକଏ ବି ଅନାଇଲା ନାହିଁ । ବ୍ରାହ୍ମଣର ଆଉ ଉପାୟ ନଥିଲା । ସେ ଫେରିଆସି କାନ୍ଦ କାନ୍ଦ ହୋଇ ଯମରାଜାଙ୍କୁ କହିଲା—"ମହାରାଜ ! ମୋ ପୁଅ ମୋତେ ଚିହ୍ନୁ ନାହିଁ ।"

ଯମରାଜାଙ୍କ ମୁହଁରେ ଈଷତ୍ ହସ । ସେ କହିଲେ—"ତମେ ଆଉ ଥରେ ତମ ପୁଅ ପାଖକୁ ଯାଅ । 'ମୁଁ ଡ଼ାକୁଛି' ବୋଲି ତାକୁ କୁହ । ସେ ଏଠାକୁ ଆସୁ ।"

ବ୍ରାହ୍ମଣଟି ପୁଣି ପୁଅ ପାଖକୁ ଗଲା । ତାକୁ ଯମରାଜା ଡାକୁଥିବା କଥା କହିଲା । ପୁଅଟି ତତ୍‌କ୍ଷଣାତ୍ ବ୍ରାହ୍ମଣ ସାଥିରେ ଆସିଲା । କିନ୍ତୁ ବାପ ସାଥିରେ ପଦେହେଁ ବି କଥା ହେଲା ନାହିଁ ।

ଯମରାଜାଙ୍କ ପାଖକୁ ବାପ ପୁଅ ଉଭୟେ ଆସିଲେ । ବାପ କହିଲା—"ମହାରାଜ ! ଏ ମୋ ପୁଅ । ଜନ୍ମଠାରୁ ବାଇଶି ବର୍ଷ ପର୍ଯ୍ୟନ୍ତ କେତେ ଯତ୍ନରେ ଏହାକୁ ବଢାଇଲି ତେସ କଥା ମୁଁ ଜାଣେ । ସବୁ ଶ୍ରଦ୍ଧା ସ୍ନେହ ଏହା ଉପରେ ଢାଳି ଦେଇଥିଲି । ଏ ମଲାପରେ ବିନ୍ଧାରେ ମୋ ମୁଣ୍ଡରୁ ହାତ ବାହାରୁ ନାହିଁ । ଆଖିରୁ ଲୁହଧାର ଶୁଖୁନ । ତାକୁ ଥରେ ଦେଖିବାର ମୋର କି ଦୁର୍ବାର ଇଚ୍ଛା । ତାହା ଅନ୍ୟ କେହି ନ ଜାଣିଲେ ବି ଆପଣ ଅନ୍ତତଃ ଜାଣନ୍ତି । କିନ୍ତୁ ଏଠି ଆସି ଦେଖୁଛି ସେ ସବୁ ଓଲଟା । କଥା କହିବା ତ ଦୂରର କଥା, ପୁଅ ବାପକୁ ଚିହ୍ନୁ ନାହିଁ ।"

ଯମରାଜା ବାପ ଅଭିଯୋଗର ଉତ୍ତର ପାଇଁ ପୁଅ ଆଡ଼କୁ ଚାହିଁଲେ । ଏ ଅଭିଯୋଗ ଶୁଣି ପୁଅଟି ରାଗିଗଲା । ଯମରାଜା ତ ଆଗରେ । ତେଣୁ ସେ ନିଜକୁ ସଂଯତ କରି କହିଲା—"ମହାରାଜ ! ଏ ମୋତେ କପରି ପୁ· ହିସାବରେ ପାଇଲା । ସେ କଥା ସେ ଜାଣିନାହିଁ, ତେଣୁ ସେ ପାଗଳ ହୋଇଛି । ପର୍ବରେ ମୁଁ ଗୋଟିଏ ବଗ ଥିଲି । ଦିନେ ଗଣ୍ଡରେ ମାଛଟିଏ ଧରି ଖାଇବାକୁ ଚେଷ୍ଟା କରୁଥିଲି । ଏ ବ୍ରାହ୍ମଣ ହୋଇ ବାଟରେ ଯାଉଥିଲା । ମୋ ଗଣ୍ଡରୁ ମାଛକୁ ଦେଖି ଏହାର ଲୋଭ ହେଲା । ଏ ଧାଇଁ ଆସି ମୋ ଗଣ୍ଡରୁ ମାଛ ଛଡ଼ାଇ ନେଲା । ତାକୁ ସ୍ୱାମୀ ସ୍ତ୍ରୀ ଆନନ୍ଦରେ ଖାଇଲେ । ମୋର ଅବସ୍ଥା କ'ଣ ହେଲା, ସେ କଥା ଏମାନେ ଟିକିଏ ବି ଭାବିଲେ ନାହିଁ । ମୁଁ ରାଗ ଓ ଦୁଃଖରେ ଉପାସ ରହି ରହି ମଲି ।

ତା'କୁ ଅଭିଶାପ ଦେଲି । ଏହି ବ୍ରାହ୍ମଣର ଜୀବନ ତାକୁ ଫେରାଇ ଦିଅନ୍ତୁ । କିଛିକ୍ଷଣରେ ଭଲ ଦେବା ପାଇଁ ମୁଁ ଏହାର ପୁଅ ହୋଇ ଜନ୍ମ ହେଲି । ମୁଁ ଯେତେବେଳେ ଯୁବକ ଏବଂ ଏହାର ସ୍ତ୍ରୀ ମୋ ଉପରେ ନିର୍ଭରଶୀଳ ହୋଇପଡ଼ିଲେ । ମୁଁ ସେତିକିବେଳେ ସେମାନଙ୍କୁ ଛାଡ଼ି ଚାଲି ଆସିଲି । ନିଜର ଦୁଷ୍କର୍ମର ଫଳ ଏମାନେ ଏଇନେ ଭୋଗୁଛନ୍ତି ।"

ବ୍ରାହ୍ମଣ ସବୁ ଶୁଣିଲା । ତାର ଛାତି ଫାଟିଗଲା ପରି ଲାଗିଲା । ପାଦତଳୁ ତା'ର ମାଟି ଖସିଗଲା ପରି ଲାଗିଲା । ସେ କଇଁ କଇଁ ହୋଇ କାନ୍ଦି ଉଠିଲା । ଯମରାଜାଙ୍କୁ ହାତ ଯୋଡ଼ି କହିଲା—"ହେ ଜମୁଦୂତ ! ଏ ମୋର ପୁଅ ନୁହେଁ, ମୁଁ ଅପରାଧୀ । ମୋର ଅପରାଧ କ୍ଷମା କରନ୍ତୁ ।"

ଯମରାଜାଙ୍କ ଆଖିରେ ଦୂତଙ୍କ ପ୍ରତି ଇଙ୍ଗିତ । ଯମଦୂତମାନେ ବ୍ରାହ୍ମଣର ଆତ୍ମାକୁ ମର୍ତ୍ତ୍ୟକୁ ଫେରାଇ ଆଣିଲେ ।

ପରଦିନ ସକାଳେ ବ୍ରାହ୍ମଣଟି ଠାକୁର ଘରୁ ପଦାକୁ ଆସିଲା । ସମସ୍ତ କଥା ବୁଢ଼ୀକୁ କହିଲା । ସେଇଦିନୁ ମଲାପୁଅ ପାଇଁ ସେମାନେ ଆଉ ଦୁଃଖ କଲେ ନାହିଁ । ସେମାନଙ୍କ ଆଖି ଖୋଲିଗଲା ।

ଏବେ ବି ଆସାମର ଲୋକେ କହନ୍ତି—ପ୍ରତିଶୋଧ ଏ ଜୀବନରେ ଯେ ନେଇ ପାରିଲା ନାହିଁ, ସେ ଆର ଜନ୍ମରେ ନିଶ୍ଚୟ ନେବ ହିଁ ନେବ ।



# କମଳା ରାଜକୁମାରୀ

ଜଣେ ରାଜା ଥିଲେ । ତାଙ୍କର ଦୁଇଟି ରାଣୀ । ଏକା-ବେଳେକେ ଉଭୟେ ଗର୍ଭବତୀ ହେଲେ । ବଡ଼ ଭାଗ୍ୟବତୀ । ତାଙ୍କର ପୁଅଟିଏ ହେଲା । ସାନ ଅଭାଗିନୀ । କମଳାଟିଏ ସେ ପ୍ରସବ କଲେ । ଏହା ଏକ ବଡ଼ତ କଥା । କାନ ହେଲା ବାନ ଏକଥା କେହି ଶୁଣି ନଥିଲେ । କମଳାଟିକୁ ଦେଖି ସାନରାଣୀଙ୍କର ମନ ମରିଗଲା । ଲାଜରେ ସେ ସଢ଼ି ଗଲେ । କେମିତି ସେ ରାଜାଙ୍କୁ ମୁହଁ ଦେଖାଇବେ, ତାହା ସେ ଚିନ୍ତା କରି ପାରିଲେ ନାହିଁ । କଥାଟାକୁ ପ୍ରକାଶ ନକରି ଚପାଇ ଦେବାକୁ ସେ ସ୍ଥିର କଲେ । ଉଆସର ପେଷାଇ ଘରକୁ ଲାଗି ଅଳିଆ ଗଦା । ସାନ ରାଣୀ କମଳାଟିକୁ ନେଲେ । ସେଇ ଅଳିଆ ଗଦାକୁ ଫିଙ୍ଗି ଦେଲେ । ମନରେ ତାଙ୍କର ଟିକିଏ ଶାନ୍ତି ଆସିଲା । ସେ ଆଶ୍ୱସ୍ତିର ଏକ ଦୀର୍ଘ ନିଃଶ୍ୱାସ ମାରିଲେ ।

କମଳାଟି କିନ୍ତୁ ଜୀବନ୍ତ ! ଅଳିଆ ଗଦାରେ ସେ ପଡ଼ି ରହିଲା ନାହିଁ । ଗଡ଼ ଗଡ଼ କରି ସେ ଦେଉଳ ଗୃହ ଆସିଲା । ଶେଷକୁ ସାନ ରାଣୀଙ୍କର ଶୋଇବା ଘରେ ସେ ଆସି ରହିଗଲା ।

ଏକଥା ଦେଖି ସାନରାଣୀଙ୍କର ହାଡ଼ ଜଳିଗଲା । ଯେତେ ହେଲେ ସେ ତ ତାକୁ ଜନ୍ମ କରିଛନ୍ତି, ତେଣୁ ତାକୁ ନିଜ ହାତରେ ନଷ୍ଟ କରି ପାରିଲେ ନାହିଁ । କମଳାଟି ସାନରାଣୀଙ୍କ ଶୋଇବା ଘରେ ଥାଏ । ସାନରାଣୀ ଯୁଆଡ଼େ ଯାଆନ୍ତି, କମଳାଟି ତାଙ୍କ ପଛେ ପଛେ ଯାଏ । ଏଥିପାଇଁ ସାନରାଣୀଙ୍କର ରାଗ ଦେଖିବ କିଏ ? କେହି ନ ଥିଲେ, କମଳାକୁ ସେ ଗୋଇଠିରେ ଫିଙ୍ଗି ଦିଅନ୍ତି ।

କମଳାଟି ଦୂରରେ ପଡ଼େ । କିନ୍ତୁ ପଡ଼ିବା ଜାଗାରୁ ସେ ଉଠି ଆସେ । ପୁଣି ସାନରାଣୀଙ୍କର ପିଛା ଧରେ ।

ସାନରାଣୀ ଯେ ଏକ ଅଦ୍ଭୁତ କମଳାର ମା, କଥା ଆଉ ଛପି ରହିଲା ନାହିଁ । ସମସ୍ତେ ଏବେ ଜାଣିଲେଣି ଯେ କମଳାଟି ନିର୍ଜୀବ ନୁହେଁ । ସେ ଜୀବନ୍ତ । ସାଧାରଣ ମଣିଷ ପରି ତାର ସବୁ ଜିନିଷ ଦେଖିବାରେ ଆଗ୍ରହ ବହୁତ । ସବୁଠାରେ ସେ ପହଞ୍ଚିଯାଏ । ସେ ଗଡ଼ ଗଡ଼ ଗଲାବେଳେ ଲୋକେ ଘାଞ୍ଚେଇ ଯାଆନ୍ତି ! ତେଣୁ ତାର କିଛି ଅସୁବିଧା ହୁଏ ନାହିଁ ।

ଉଆସକୁ ଲାଗି ନଈ । ସେଇଟି ଖୁବ୍ ଗଭୀର । ସେଥିରେ ବର୍ଷକ ବାରମାସ ଅଗାଧ କାଚ ପାଣି ରହେ । ସେଇଟି ଏଇ ରାଜ୍ୟ ଓ ପଡ଼ୋଶୀ ରାଜ୍ୟର ମଝି ସୀମା । ସହଜରେ ଯାତାୟାତ କରିବାର ପ୍ରାକୃତିକ ପ୍ରତିବନ୍ଧକ ।

ଦିନକର କଥା । ସେତେବେଳକୁ ଦ୍ୱିପ୍ରହର । ଖରା ଝାଇଁ ଝାଇଁ ମାରୁଛି । ଏ ଖରା ଦାଉରୁ ରକ୍ଷା ପାଇବାକୁ ଜୀବ ଜନ୍ତୁ ସମସ୍ତେ ବିଶ୍ରାମ ନେଉଥାନ୍ତି । ସେଇଥିପାଇଁ ଚାରିଆଡ଼େ ଶୁନ୍‌ଶାନ୍ । କାଉ କୋଇଲିର ଦେଖା ନାହିଁ । ପଡ଼ୋଶୀ ଦେଶର ରାଜକୁମାର ନଈର ଆରପଟ କୂଳରେ ବନଶୀ ପକାଇବାରେ ବ୍ୟସ୍ତ । ରାଜପୁତ୍ର କାହିଁକି କେଜାଣି ଏପଟ କୂଳକୁ ଅନାଇଦେଲେ । ହଠାତ୍ ସେ ଦେଖିଲେ—କମଳାଟିଏ ଗଡ଼ି ଗଡ଼ି ନଈ କୂଳକୁ ଆସିଲା । ପାଣି-ଧାର ପାଖରେ ଅଟକି ଗଲା । କମଳାଟି ଆସ୍ତେ ଆସ୍ତେ ବଡ଼ ହେବାକୁ ଲାଗିଲା । ସେଇଟି ଆଶାତୀତ ଭାବରେ ବଡ଼ ହୋଇଗଲା । ତାପରେ ତା' ଉପର ଚୋପା ଖୋଲିଗଲା । ତା ଭିତରୁ ଏକ ଯୁବତୀ ବାହାରି ଆସିଲା । ଦେଖିବାକୁ ସେ ଖୁବ୍ ସୁନ୍ଦରୀ । ତାର ସୌନ୍ଦର୍ଯ୍ୟ

ଅପୂର୍ବ । ଅଦ୍ଭୁତ । ଅତୁଳନୀୟ । ରାଜପୁତ୍ର ତା' ରୂପରେ ମୁଗ୍ଧ । ବିମୋହିତ । ଏକ ଲୟରେ ତାକୁ ସେ ଚାହିଁ ରହିଲେ ।

ଯୁବତୀଟି ସିଧା ଯାଇ ନଈ ପାଣିରେ ପଶିଲା । ସେଠାରେ ସେ ମନବୋଧ କରି ଗାଧୋଇଲା । ଗାଧୋଇ ସାରି ନଈ କୂଳକୁ ଆସିଲା । ତାର ବାଳ ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବି ଥିଲା । ସେ ଓଦା ବାଳକୁ ମେଲା କରି ଖରାରେ ଶୁଖାଇଲା । ବାଳ ଶୁଖିବାଲାରୁ ସେ କମଳା ଭିତରେ ପଶିଗଲା । କମଳା କେଣ୍ଡା ବନ୍ଦ ହୋଇଗଲା । ନିମିଷକ ମଧ୍ୟରେ ବଡ଼ କମଳାଟି ପୁଣି ଛୋଟ ହୋଇଗଲା ଓ ଗଡ଼ି ଗଡ଼ି ଯେଉଁଆଡ଼ୁ ଆସିଥିଲା ପୁଣି ସେଇଆଡ଼କୁ ଚାଲିଗଲା ।

କମଳା ଆସିବା ଠାରୁ ଯିବା ପର୍ଯ୍ୟନ୍ତ ଯୁବରାଜ ତାକୁ ଏକ ଲୟରେ ଚାହିଁଥିଲେ । କମଳା ଫିଟା ଚାଲିଗଲା କିନ୍ତୁ ତା ଭିତରେ ଯେଉଁ ଯୁବତୀ ଥିଲା, ତାର ରୂପ ତାଙ୍କ ଆଖି ଆଗରେ ଖାଲି ନାଚିଲା । ସେ ବନଶୀ ଆଉ ପକାଇ ପାରିଲେ ନାହିଁ । ବନଶୀକୁ ସେଇଠି ପକାଇ ଦେଇ ସେ ତାଙ୍କ ଡ଼ିଆସକୁ ଫେରି ଆସିଲେ । ତାଙ୍କର ଶୋଇବା ଘରକୁ ସେ ସିଧା ଗଲେ । ଲୁଗାପଟା ବଦଳାଇଲେ ନାହିଁ । ମୁହଁ ମାଡ଼ି ବିଛଣାରେ ପଡ଼ିରହିଲେ ।

ସନ୍ଧ୍ୟା ହେଲା । ରାଜକୁମାରଙ୍କର ଦେଖା ନାହିଁ । ରାଣୀ ପୁଅର ଖବର ପରିଚାରିକାମାନଙ୍କୁ ପଚାରିଲେ । ସେମାନେ କହିଲେ—"ଘୋଡ଼ାଶାଳରେ ରାଜକୁମାରଙ୍କର ଘୋଡ଼ା ଠିଆ ହୋଇଛି । ସେ ଫେରିଆସି ବିଛଣାରେ ପଡ଼ିଛନ୍ତି ।"

ରାଜପୁତ୍ର ଏ ଅବେଳରେ ଶୋଇବାରେ ଅନଭ୍ୟସ୍ତ । କିଛି ନା କିଛି ଅସୁବିଧା ନ ହୋଇଥିଲେ, ସେ ସିଧା ଯାଇ ଶୋଇନଥାନ୍ତେ । ଏ କଥା ରାଣୀଙ୍କ ମନକୁ ଆସିଲା । ସେ ଆଉ ଡେରି କଲେ ନାହିଁ ।

ସାଙ୍ଗେ ସାଙ୍ଗେ ପୁଅର ଶୋଇବା ଘରକୁ ଗଲେ । ପୁଅକୁ ଉଠାଇବାକୁ ଚେଷ୍ଟା କଲେ । ସେ କିନ୍ତୁ ଉଠିଲା ନାହିଁ । ରାଣୀ ପୁଅର ଏଡ଼ିଙ୍ଗ ଦେଖି ବ୍ୟସ୍ତ ହୋଇ ଉଠିଲେ । ରାଜାଙ୍କୁ ଡକାଇ ପଠାଇଲେ । ରାଜା ଆସି ସବୁ କଥା ଶୁଣିଲେ । ସେ ଅନୁମାନ କଲେ—କିଛି ଅସୁବିଧା ହୋଇଛି । ସେଥିପାଇଁ ପୁଅର ଅଭିମାନ । ଶୋଇବାଟା ଗୋଟେ ବାହାନା । ସେ ପୁଅକୁ ଉଠିବାକୁ କହିଲେ । ପୁଅ ତାର ନିଦ ନ ଭାଙ୍ଗିଲା ପରି ଛଳନା କଲା ।

ରାଣୀ ଆଉ ସମ୍ଭାଳି ପାରିଲେ ନାହିଁ । ସେ ଅଧୀର ହୋଇ କହିଲେ—"ବାପରେ, ତୁ ଉଠ । ମୋତେ ତୋ ମନକଥା କହ ଯଦି ତୋତେ କିଏ ଅପମାନ କରିଛି, ସେ କଥା କହ । ମୁଁ ତାହା ଜାଣିଲେ ତା'ର ମୁଣ୍ଡ କଟାଇ ଆଣିବି । ତୋର ଯଦି କୌଣସି ଜିନିଷପତ୍ର ପ୍ରତି ଲୋଭ ହୋଇଛି, ତାହା ମୁଁ ସାଥି ସାଥି ମଗାଇ ଦେବି । ତୁ ଯଦି କାହାକୁ ବିବାହ କରିବାକୁ ଚାହୁଁ, ମୁଁ ତୋତେ ତା ସାଥିରେ ବିବାହ କରାଇ ଦେବି ।"

ମା'ର ଆଶ୍ୱାସନା ପାଇ ରାଜପୁତ୍ର ତୁଣ୍ଡ ଖୋଲିଲେ । ସେ କହିଲେ—"ଆର ପଟ ଦେଶରେ ଗୋଟିଏ କମଳା ଅଛି । ସେ ମନକୁ ମନ ଗଡ଼ି ଗଡ଼ି ଯାଏ । ମୁଁ ତାକୁ ବିବାହ କରିବାକୁ ଚାହେଁ । ତୁମେ ତ ଜବାବ ଦେଇଛ । ତେଣୁ ତା ସହିତ ମୋର ବାହାଘର କରିଦିଅ । ଯଦି ଏ ବ୍ୟବସ୍ଥା ନ କର, ମୁଁ ଘର ଛାଡ଼ି ପଳାଇବି ।"

ଏକଥା ଶୁଣି ରାଜାରାଣୀ ଭାବିଲେ—ପୁଅର ବୋଧେ ମୁଣ୍ଡ କିଛି ଗୋଳମାଳ ହୋଇଛି । ସେଥିପାଇଁ ସେ ଏମିତି କଥା କହୁଛି । ସେମାନେ ଜାଣନ୍ତି ସେମାନଙ୍କର ମନ କଥା ପୁଅକୁ କହିଲେ,

ସେ ରଗିଉଠିବ । କ'ଣ ବୋଲି କ'ଣ କରି କହିବ । ତେଣୁ ସେମାନେ କହିଲେ—"ହଇରେ ଏଇ ଗୋଟେ କଥା, ଏଥି ପାଇଁ ଏତେ ବ୍ୟସ୍ତ । ତୁ ଉଠ । ଆମେ ତୋ କଥା ରଖିବୁ ।"

ପୁଅ କିନ୍ତୁ ବାପମାଙ୍କ କଥାରେ ଭୁଲିଲା ନାହିଁ । ସେ କହିଲା—"ଆଗ ତୁମ୍ଭେମାନେ ମୋତେ କଥାଦିଅ । ନଇଲେ ମୁଁ ଏଠୁ ଉଠିବି ନାହିଁ ।"

ରାଜପୁତ୍ର ଜିଦ୍‌ଖୋର । ତା' ଠାରେ ସେ ସବୁବେଳେ ଅଟଳ । ଏ କଥା ରାଜାରାଣୀଙ୍କ ଦେହଭଷା କଥା । ତେଣୁ ସେମାନେ "କଥା ଦେଉଛନ୍ତି" ବୋଲି ତ କହିଲେ ।

ପଡ଼ଶା ରାଜ୍ୟକୁ ଦୂତ ଗଲା । ସେ ଫେରିଆସି ଜଣାଇଲା ଯେ ରାଜପୁତ୍ର କହୁଥିବା ଭଳି କମଳାଟିଏ ପଡ଼ଶା ରାଜ୍ୟରେ ଅଛି । ସେ ଦେଶର ସାନରାଣୀ ତା'ର ଜନ୍ମିତ ମା । ସେ କମଳା ଅଦ୍ଭୁତ । ରାଜ୍ୟ ସାରା ଖଡ଼ ଗଡ ବୁଲେ ।"

ଏକଥା ଶୁଣି ରାଜାରାଣୀ ଭାବିଲେ—ଏହି କମଳା ଭିତରେ ନିଶ୍ଚୟ କିଛି ଗୂଢ଼ ରହସ୍ୟ ଅଛି । ତାହା ବୋଧହୁଏ, ରାଜପୁତ୍ର ଜାଣେ । ସେଥିପାଇଁ ସେ ସେଇ କମଳାକୁ ବିବାହ କରିବାକୁ ଆଗ୍ରହୀ । ସେଥିପାଇଁ ଏ ପ୍ରସ୍ତାବର ବିରୋଧ ସେମାନେ କଲେ ନାହିଁ । ବରଂ ସେ ଦେଶର ରାଜାଙ୍କ ପାଖକୁ ଏ ପ୍ରସ୍ତାବ ବିଧିବଦ୍ଧ ଭାବରେ ପଠାଇ ଦେଲେ ।

ସେ ଦେଶର ରାଜାଙ୍କ ପାଇଁ ଏ ଏକ ଅପ୍ରତ୍ୟାଶିତ ଖବର । ଏହା ପାଇ ସେ ଦେଶର ରାଜା ବିଚଳିତ ଓ ଆଶ୍ଚର୍ଯ୍ୟ । ସେ କିଛି ମତାମତ ଦେଲେ ନାହିଁ । ବରଂ ପ୍ରସ୍ତାବଟି ସାନରାଣୀଙ୍କ ପାଖକୁ ପଠାଇଲେ । ଏ କଥାକୁ ସାନ ରାଣୀ ବିଶ୍ୱାସ କଲେ ନାହିଁ ।

ବରଂ ସେ ଭାବିଲେ—ତାଙ୍କୁ ଅପଦସ୍ଥ କରିବାକୁ ଏହା ଏକ ଘୃଣ୍ୟଚକ୍ରାନ୍ତ । କାହାକୁ ସେ କିଛି କହିଲେ ନାହିଁ । ବରଂ ଚତୁର ଛାଡିଲେ । ପାଲଟା ଖବର ରାଜାଙ୍କ ପାଖକୁ ପଠାଇଲେ ନାହିଁ ।

ଅନ୍ତଃପୁରରୁ କିଛି ଖବର ଆସିଲା ନାହିଁ । ସେ ରାଜଦୂତ ଅପେକ୍ଷା କରିଛି । ଏଥିରେ ରାଜା ବ୍ୟସ୍ତ ହୋଇ ଉଠିଲେ । ତତ୍କ୍ଷଣ ନିଜେ ସେ ସାନରାଣୀଙ୍କ ପାଖକୁ ଖୋଜ କଲେ । ତାଙ୍କୁ ସମସ୍ତ କଥା ବୁଝାଇଲେ । ସାନରାଣୀଙ୍କର ଯେଉଁ ଧାରଣା, ତାହା ଅମୂଳକ ଓ ଅବାସ୍ତବ । ଏହାପରେ ସାନ ରାଣୀଙ୍କର ସନ୍ଦେହ ଆଉ ରହିଲା ନାହିଁ । ତେଣୁ ସେ ଏ ପ୍ରସ୍ତାବରେ ରାଜି ହୋଇଗଲେ ।

ରାଜା ଏହି ବିବାହ ବିଷୟରେ ଗଭୀର ଚିନ୍ତା କଲେ । ତାଙ୍କର ମତ ହେଲା—ଏହି ବିବାହ ଯଦି ଖୁବ୍ ଜାକଜମକରେ ଅନ୍ୟାନ୍ୟ ବିବାହ ଭଳି ହୁଏ, ତାହା ଲୋକ ଚକ୍ଷୁରେ ଅସୁନ୍ଦର ଦେଖାଯିବ । ବରଂ ଲୋକେ ହସିବେ । ଲୋକେ ଏହାକୁ ସମାଲୋଚନା କରିବେ । ତେଣୁ ଚୁପ୍ ଚାପ୍ ଭାବରେ ଏହି ବାହାଘର କରିନେବାକୁ ହେବ । ସେଥିପାଇଁ ସେ ରାଜଦୂତ ହାତରେ ଖବରଦେଲେ—ଏ ପ୍ରସ୍ତାବରେ ସେ ଏକମତ । କିନ୍ତୁ ମଣିଷ ସାଥିରେ ମଣିଷ ବିବାହ କଲେ, ତାହା ଖୁବ୍ ଜାକ୍ ଜମକରେ ହୁଏ । କାରଣ ଏହା ଏକ ସ୍ୱାଭାବିକ କଥା । କମଳା ସାଥିରେ ରାଜପୁତ୍ରଙ୍କର ବିବାହ ଏକ ଅସ୍ୱାଭାବିକ କଥା । ସାଧାରଣତଃ ଏପରି ବିବାହ ନୀତି ନିୟମ ବିରୁଦ୍ଧ । ତଥାପି ଯଦି ଯୁବରାଜଙ୍କର ଏ ବିବାହରେ ଜିଦ୍, ତେବେ ଏ ରାଜ୍ୟରେ ଏହି ବିବାହ ହେବ ନାହିଁ । ବରଂ କମଳାଟିକୁ ସେ ପଠାଇ ଦେବେ । ରାଜା ଯଦି ଇଚ୍ଛାନ୍ତି, ତାଙ୍କ ପୁଅ ସହିତ ଏହି କମଳାର ବିବାହ କରାଇ ପାରନ୍ତି ।"

ଏ ଖବର ପାଇ ଏପଟ ରାଜ୍ୟର ରାଜା ତାଙ୍କର ସମ୍ମତି ଜଣାଇଲେ । ଆପତ୍ତି ତ କାହାର କିଛି ନ ଥିଲା । ବିବାହ ଦିନ ପୂର୍ବରୁ ସାନରାଣୀ କମଳାଟିକୁ ପରିଷ୍କାର ପରିଚ୍ଛନ୍ନ କରି ଧୋଇଲେ । ତାପରେ ଏକ ସୁସଜ୍ଜିତ ଶବାଗ୍ରରେ ତାକୁ ଆଣି ଥୋଇଲେ । ସେ ଶବାଗ୍ରଟି ଏପଟ ରାଜ୍ୟକୁ ଆସିଲା । ରାଜପୁତ୍ର ଏ କମଳାଟି ନେଇ ନିଜର ଶୋଇବା ଘରେ ରଖିଦେଲେ ।

ଆଗରୁ ରାଜପୁତ୍ର ତାଙ୍କ ଶୋଇବା ଘରେ ରାତ୍ରଭୋଜନ କରନ୍ତି । ସେଥିପାଇଁ ତାଙ୍କର ଖାଦ୍ୟପେୟ ସେଠାକୁ ଆସେ । ରାଜପୁତ୍ର ଯାହା ଖାଆନ୍ତି, ଅବଶିଷ୍ଟ ଯାହା ବଳେ, ତାକୁ ତାଙ୍କର ପରିଚାରିକାମାନେ ଖାଇ ସନ୍ତୁଷ୍ଟ ।

କମଳାଟି ଆସି ରହିଲା ଦିନୁ, ଅବସ୍ଥାର ପରିବର୍ତ୍ତନ ହୋଇଛି । ରାଜପୁତ୍ର ଖାଇବା ପରେ ଆଉ ଯାହା ବଳେ, ସଖୀଙ୍କୁ ସେସବୁ ରହେ ନାହିଁ । ଏହା ଜାଣି ଉଆସରେ ସମସ୍ତେ ଫୁସଫାସ୍ ହେଲେଣି । କିନ୍ତୁ ଏ କଥା କହିବାକୁ କାହାର ସାହସ ନ ଥିଲା ।

କମଳା ତାଙ୍କ ଶୋଇବା ଘରେ ରହିବା ବହୁତ ଦିନ ହୋଇଗଲା । ତା ଭିତରେ ଥିବା ଝିଅକୁ ରାଜପୁତ୍ର ଦିନେ ହେଲେ ଦେଖି ପାରିଲେ ନାହିଁ । ସେଇ ଝିଅ କଥା ମନେ ପକାଉଥିବାବେଳେ ସେ ଚିନ୍ତା । ତାଙ୍କର କନ୍ଦର୍ପ ପରି ଚେହେରା ଥିଲା । ଅଥଚ ଦିନ କେଇଟାରେ ସେ କଳାକାଠ ପଡିଗଲେ । ହଡ଼ଖାଞ୍ଜି ଗଣ୍ଠା ଦୋହଲିଲାଣି ।

କେଉଁଠି ଥିଲା କେଜାଣି ହଠାତ୍ ଦିନେ ଗୋଟିଏ ବୁଢ଼ୀ ଆସି ଉଆସରେ ପହଞ୍ଚିଲା । ସମସ୍ତଙ୍କର ଯେମିତି ସେ ଅତି ପରିଚିତ । ସେଇଭଳି ତାର ବ୍ୟବହାର । ସେ ରାଜପୁତ୍ରଙ୍କୁ ଡାକି କହିଲା—

"ମୁଁ ଶୁଣିଛି, ତୁମ୍ଭ ଯାହାକୁ ବାହା ହେବେ, ତାକୁ ଆଣି ଶୋଇବା ଘରେ ରଖିଛନ୍ତି, ତାକୁ ଟିକେ ପଦାକୁ ଛାଡ଼ିଲେ ସିନା ଲୋକେ ଦେଖନ୍ତେ । ଅନ୍ୟମାନଙ୍କୁ ଲୁଚାଇ କି ଲାଭ ଅଛି ?" ରାଜପୁଅ ଏକଥା ଶୁଣି ମଉଳି ଗଲେ । ଆଖିରେ ଲୁହ ଡ଼ଳ ଡଳ ହେଲା । ବୁଢ଼ୀଟି ରାଜପୁଅଙ୍କର ଏ ଅବସ୍ଥା ଦେଖି ଠୋ-ଠୋ ହୋଇ ହସିଲା । କହିଲା—"ଯୁବରାଜ ! ଆପଣ ବୋକା ହୋଇଗଲେଣି । ଟିକିଏ ସ୍ଥିର ହୁଅନ୍ତୁ, ମୋ କଥା ମାନିଲେ ଆଜି ଆପଣ କମଳା କୁମାରୀକୁ ପାଇବେ ।"

ରାଜପୁଅଟିର ଆଗ୍ରହ ଅସୀମ । ସେ ବୁଢ଼ୀର ହାତ ଧରି ଟଳାଇ କହିଲେ—"ମୋତେ ତୁ ବାଟ ବତା । ମୁଁ ତୋତେ ଅପର୍ଯ୍ୟାପ୍ତ ଧନ ଦେବ ।"

ବୁଢ଼ୀ କହିଲା—"ପ୍ରତିଦିନ ତୁମେ ଖାଇ ଶୋଇଲା ପରେ କମଳା ଭିତରୁ ଝିଅଟି ବାହାରି ଆସେ । ତୁମର ବଳିଥିବା ଖାଦ୍ୟ ଖାଏ । ତାପରେ ପୁଣି କମଳା ଭିତରେ ରହିଯାଏ । ଗୋଟିଏ ଜଳନ୍ତା ଉହ୍ମେଇ, ପାଚିଲା କଦଳୀ କାନ୍ଦିଏ ଓ ବସାଦହି ହାଣ୍ଡିଏ ତୁମେ ଆଜି ତମ ଶୋଇବା ଘରେ ରଖିବ । ସବୁଦିନ ଭଳି ଖାଇ ସାରି ଶୋଇବାକୁ ଯିବ । ପ୍ରକୃତରେ ଶୋଇବ ନାହିଁ । ଖାଲି ଶୋଇବାକୁ ଯିବ । ପ୍ରକୃତରେ ଶୋଇବ ନାହିଁ । ଖାଲି କରି ପଡ଼ି ରହିବ । ଅଧଘଣ୍ଟାରେ କମଳା ଖୋଲିଯିବ । ତା ଭିତ ର ଥି । ଯୁବତୀ ଆସି ଖାଇବାକୁ ଆରମ୍ଭ କରିବ । ତୁମେ ତତ୍‌କ୍ଷଣାତ୍ ଉଠି କମଳା ଚୋପାକୁ ଜଳନ୍ତା ଉହ୍ମେଇରେ ପକାଇ ଦେବ । ତା । ପୋଡ଼ିବାକୁ ଆରମ୍ଭ କଲେ, ଝିଅଟି ଅଚେତ ହୋଇଯିବ । ହାଣ୍ଡିରେ ଥିବା ବସାଦହିକୁ ତା ଦେହରେ ଢ଼ାଳି ଦେବ । ପାଚିଲା କଦଳୀକୁ ତା ମୁଣ୍ଡରେ ଘଷିବ । କିଛି ସମୟ ପରେ ସେ ସୁସ୍ଥ ହୋଇଯିବ ।"

ବୁଢ଼ୀ ଯେମିତି କହିଥିଲା, ରାଜପୁତ୍ର ଠିକ୍ ସେମିତି କଲେ । ଫଳରେ ରାଜକୁମାରୀ କମଳା ଭିତରେ ରହିପାରିଲା ନାହିଁ ।

କଥାଟା ସଭାଙ୍କ ସବୁରି ଆଗେ ପ୍ରକଟ ହୋଇଗଲା । ରାଜାରାଣୀ ବୋହୂକୁ ଦେଖି ଖୁସି । ବୋହୂଟି ଅନନ୍ୟ ସୁନ୍ଦରୀ । ଖୁବ୍ ଜାକଜମକରେ ବାହାଘର ହେଲା । ଅନ୍ୟ ଦେଶର ରାଜା ଓ ସାନରାଣୀ ଝିଅର ବିବାହ ଉତ୍ସବରେ ଯୋଗ ଦେଲେ । ସାନରାଣୀଙ୍କର ଦୁଃଖର ଦିନ ସରିଗଲା ।



# ସନ୍ନ୍ୟାସୀ

ଜଣେ ବଣିକ । ତାର ଦୁଇଟି ସ୍ତ୍ରୀ । ସାନଟି ସୁନ୍ଦରୀ । ବୟସ ଖୁବ୍ କମ୍ । କୋଡ଼ିଏ ଭିତରେ ହେବ ।

ଥରେ ତାଙ୍କ ଘରେ ଜଣେ ସନ୍ନ୍ୟାସୀ ଆସି ପହଞ୍ଚିଲେ । ତାଙ୍କର ପରିଧାନ ଗେରୁଆ ବସ୍ତ୍ର । କଥା ଗୁଡ଼ିକ ନମ୍ର । ସବୁ କଥାରେ ରାମନାମ । ବଣିକଟି ସନ୍ନ୍ୟାସୀଙ୍କୁ ଦେଖି ଭୁଲିଗଲା । ଭାବିଲା—ଏ ଜଣେ ସିଦ୍ଧ ପୁରୁଷ । ତାପରେ ତାଙ୍କର ସେବା ଚର୍ଚ୍ଚା ଖୁବ୍ କଲା । ନିଜ ସ୍ତ୍ରୀ ଦୁଇଟିଙ୍କୁ ଡାକି କହିଲା—"ଏ ଜଣେ ସାଧୁ ପୁରୁଷ ! ତାଙ୍କ ଆଶୀର୍ବାଦ ମଙ୍ଗଳମୟ । ତାହା ଆମର କାମ୍ୟ । ତୁମ୍ଭେମାନେ ତାଙ୍କର ଯତ୍ନ ନେବ । ସନ୍ତୁଷ୍ଟ କରିବ । ତାଙ୍କର

ଯେପରି କୌଣସି ପ୍ରକାର ଅସୁବିଧା ନ ହୁଏ ସେଥିପାଇଁ ନଜର ଦେବ ।”

ବଣିକର ବ୍ୟବସାୟ ବହୁତ ! ବେଳେ ବେଳେ ବଣିକ ବ୍ୟବସାୟ ସନ୍ଧାନରେ, ମାସ ମାସ ଧରି ଘରୁ ଅନୁପସ୍ଥିତ ରହେ । ସନ୍ନ୍ୟାସୀ ତାଙ୍କ ଘରେ ଥିଲାବେଳେ ବଣିକକୁ ବିଦେଶ ଯିବାକୁ ପଡ଼ିଲା । ଯିବା ପୂର୍ବରୁ ସେ ତାର ଦୁଇସ୍ତ୍ରୀଙ୍କୁ ଡାକିଲା, ତା' ଅନୁପସ୍ଥିତିରେ ସନ୍ନ୍ୟାସୀଙ୍କର ଯେପରି କିଛି ଅସୁବିଧା ନହୁଏ, ସେ ବିଷୟରେ ସେମାନେ ସଚେତନ ରହିବାକୁ କହିଲା ।

ବଣିକର ସାନ ସ୍ତ୍ରୀ ଅନନ୍ୟ ସୁନ୍ଦରୀ । ତାକୁ ଦେଖି ସନ୍ନ୍ୟାସୀ ପାଗଳ । କିନ୍ତୁ ତାଙ୍କ ମନ କଥା ସେ ମନରେ ରଖିଥାଆନ୍ତି । ବଣିକ ଘରେ ନାହିଁ । ତାଙ୍କୁ ଅପୂର୍ବ ସୁଯୋଗ ମିଳିଗଲା । ଦିନେ ସାନ ସ୍ତ୍ରୀ ତାଙ୍କ ପାଖରେ ଏକା ଥାଏ । ସନ୍ନ୍ୟାସୀ ଭାବିଲେ—ଏ ଏକ ସୁଯୋଗ । ସେ ତାଙ୍କ ମନକଥା ତାକୁ କହିଲେ । ଏ କଥା ଶୁଣି ବଣିକର ସାନ ସ୍ତ୍ରୀ ଅବାକ୍ । ନିଜ କାନକୁ ସେ ବିଶ୍ୱାସ କରି ପାରିଲା ନାହିଁ ।

ସନ୍ନ୍ୟାସୀଙ୍କ ଢ଼ଙ୍ଗ ଦେଖି ସେ ତାଙ୍କ ଉଦ୍ଦେଶ୍ୟ ଜାଣିପାରିଲା । ଯଦିଓ ରାଗରେ ସେ ଜଳି ଯାଉଥିଲା, ସେ କଥା ବାହାରକୁ ପ୍ରକାଶ କଲା ନାହିଁ । ନିଜକୁ ସେ ଶାନ୍ତ, ସ୍ଥିର ରଖି ଗମ୍ଭୀର ଭାବରେ କହିଲା—“ଆପଣ ମୋର ଗୁରୁ । ଆପଣଙ୍କର ଏ ପ୍ରକାର ଲାଳସା ଅଶୋଭନୀୟ ।”

ସନ୍ନ୍ୟାସୀ ଅନୁଭବ କଲେ—ବଣିକର ସାନ ସ୍ତ୍ରୀ ସତୀ, ସ୍ୱାଧୀ, ଚରିତ୍ରବତୀ । ତାଙ୍କର ମନ ଉଦ୍ଦେଶ୍ୟ କେବେହେଲେ ସାଧିତ ହୋଇ ପାରିବ ନାହିଁ । ତେଣୁ ସେ କଥାଟା ବାଆଁରେଇ ଦେଲେ ।

ସେ କହିଲେ—"ମୁଁ ସନ୍ନ୍ୟାସୀ । ମୋର ଲାଳସା ନାହିଁ । ତମେ ମୋର ଶିଷ୍ୟା । ତମକୁ ମୁଁ ପରୀକ୍ଷା କରୁଥିଲି । ଏଥିର ମୋର ବିଶ୍ୱାସ, ତୁମେ ନିଷ୍କଳଙ୍କ ।"

ସନ୍ନ୍ୟାସୀ କଥାଟା ସିନା ବାଆଁରେଇ ଦେଲେ, କିନ୍ତୁ ସେ ଛୋଟାଇବସି ପାରିଲେ ନାହିଁ । ସବୁବେଳେ ବଣିକର ସାନ ସ୍ତ୍ରୀ କଥା ସେ ଘାବୁଥାଆନ୍ତି । ଶେଷରେ ସେ ଗୋଟିଏ କୌଶଳ ପାଞ୍ଚିଲେ । ସେ ତାକୁ ଡାକି କହିଲେ—"ମୋର ଗୋଟିଏ ପୂଜା କରିବାର ଅଛି । ସେଥିପାଇଁ ଶ୍ମଶାନର ମାଟି ଦରକାର । ପୂଜା ସରିବା ପର୍ଯ୍ୟନ୍ତ ପ୍ରତିଦିନ ରାତି ଅଧରେ ଜଣେ ସ୍ୱାଧ୍ୱୀ ଓ ପତିବ୍ରତା ସ୍ତ୍ରୀକୁ ସେ ମାଟି ଆଣିବାକୁ ହେବ । ତା ନ ହେଲେ ପୂଜା ହୋଇପାରିବ ନାହିଁ । ପୂଜା ଆରମ୍ଭ କଲେଣି, ତାହା ବିଭ୍ରାଟ ହୋଇଯିବ । ମୋ ଆଖିରେ ତମ ଛଡ଼ା ଏ ମାଟି ଆଣିବା ପାଇଁ କେହି ଦିଶୁନାହାନ୍ତି । ତମେ କ'ଣ ମୋ ପ୍ରତି ଦୟା କରି ଏତିକି କରିପାରିବ ନାହିଁ ।"

ଏକଥା ଶୁଣି ବଣିକର ସାନ ସ୍ତ୍ରୀ ମନେ ମନେ ରାଗିଗଲା । ବିରକ୍ତ ବି ହେଲା । କିନ୍ତୁ ସେ ଉପାୟହୀନା । ସ୍ୱାମୀ ତାର ଦୂରରେ । ସନ୍ନ୍ୟାସୀଙ୍କୁ ମନା କଲେ ସେ ଅଭିଶାପ ଦେବେ । ଅମଙ୍ଗଳ ହେବ । ତା'ଛଡ଼ା ତାଙ୍କ କଥା ମାନିବାକୁ ସ୍ୱାମୀ କହିଯାଇଛନ୍ତି । ନ ମାନିଲେ, ସେ ଆସି ବିରକ୍ତ ହେବେ । ସ୍ୱାମୀଙ୍କର ଅସନ୍ତୋଷ ଆପଣ ସମ୍ପର୍କରେ ଆଞ୍ଚ ଆଣିବ । ସଂସାର ଦୁଃଖମୟ ହୋଇ ଉଠିବ । ସନ୍ନ୍ୟାସୀଙ୍କ କଥା ମାନିଲେ, ନିଜ ମନରେ କଷ୍ଟ ହେବ ସତ, କିନ୍ତୁ ଅସୁବିଧା କିଛି ହେବ ନାହିଁ । ତେଣୁ ସେ ସନ୍ନ୍ୟାସୀଙ୍କ କଥାରେ ସମ୍ମତ ହେଲା । ତାପରେ ପ୍ରତି ରାତିରେ ସେ ଶ୍ମଶାନକୁ ଯାଏ । ମାଟି ଆଣେ । ସନ୍ନ୍ୟାସୀଙ୍କୁ ତାହା ଦିଏ ।

ଇତି ମଧ୍ୟରେ ବଣିକଟି ବିଦେଶରୁ ଫେରି ଆସିଲା । ସେ ସନ୍ନ୍ୟାସୀଙ୍କ ପାଖରେ ବହୁତ ସମୟ କଟାଏ । ତାଙ୍କ କଥା ଅମୃତ ପରି ପିଇଯାଏ । ସନ୍ନ୍ୟାସୀଙ୍କ କଥା ତା ପାଇଁ ବେଦବାକ୍ୟ । ଅବିଶ୍ୱାସର ପ୍ରଶ୍ନ ନାହିଁ ।

ବଣିକର ତାଙ୍କ ପ୍ରତି ଦୁର୍ବଳତାକୁ ସନ୍ନ୍ୟାସୀ ଲକ୍ଷ୍ୟ କଲେ । ସେ ଯେ ତାଙ୍କର ଜଣେ ସ୍ତାବକ, ସେଥିରେ ତାଙ୍କର ସନ୍ଦେହ ନଥିଲା । ବଣିକର ଦୁର୍ବଳ ମୁହୂର୍ତ୍ତ ଦେଖି ଥରେ ସନ୍ନ୍ୟାସୀ କହିଲେ—"ତମର ବିଶ୍ୱସ୍ତ ସ୍ତ୍ରୀ ଜଣେ ଡାହାଣୀ ; ତମେ ଯଦି ପରୀକ୍ଷା କରିବାକୁ ଚାହଁ, ରାତି ଅଧରେ ମୋ ସାଥିରେ ଆସ । ସାଙ୍ଗ ହୋଇ ମଶାଣିକୁ ଯିବା, ସେଠି ତମ ସ୍ତ୍ରୀ କଣ କରୁଛି, ତାହା ତମେ ସ୍ୱଚକ୍ଷୁରେ ଦେଖିବ ।"

ସାନ ସ୍ତ୍ରୀକୁ ବଣିକ ଖୁବ୍ ଭଲ ପାଏ । ସେ ସନ୍ନ୍ୟାସୀଙ୍କ କଥା ବିଶ୍ୱାସ କରିପାରୁ ନଥାଏ । ଏଣେ ଗୁରୁବାକ୍ୟ ଅବିଶ୍ୱାସର ପ୍ରଶ୍ନ କେଉଁଠି ଉଠୁଛି ? ଶେଷକୁ ସନ୍ନ୍ୟାସୀଙ୍କ ସାଙ୍ଗେ ରାତି ଅଧରେ
କେଉଁଠି ଉଠୁଛି ? ଶେଷକୁ ସନ୍ନ୍ୟାସୀଙ୍କ ସାଙ୍ଗେ ରାତି ଅଧରେ
ମଶାଣିକୁ ଗଲା ।

ସେଠାରେ ଯାହା ଦେଖିଲା, ଗୁରୁଙ୍କ କଥା ଯେ ଏକବାରେ ସତ୍ୟ, ଏଥିରେ ତାର ଅବିଶ୍ୱାସ କରିବାର କିଛି ନଥିଲା । ସେ ପ୍ରଚଣ୍ଡ ରାଗିଗଲା । ନିଜ ହାତରେ ତା ସ୍ତ୍ରୀକୁ ହତ୍ୟା କରିବା ପାଇଁ ଖଣ୍ଡା ଉଠାଇଲା । ସନ୍ନ୍ୟାସୀ ତାକୁ ଅଟକାଇ କହିଲେ—"ବାବା ! ନାରୀ ଯେତେ କଳଙ୍କିନୀ ହେଲେ ମଧ୍ୟ ତାକୁ ସ୍ୱହସ୍ତରେ ହତ୍ୟା କରିବା ଅନୁଚିତ । ତା' ଛଡ଼ା ଏହା ରାଜାଙ୍କ କାନକୁ ଯିବ, ଏହି ଅପରାଧ ପାଇଁ ତମକୁ ମୃତ୍ୟୁଦଣ୍ଡ ମିଳିବ । ବରଂ ତମେ ମୋ କଥା ମାନ । ତମେ ଏ ସ୍ତ୍ରୀର ହାତ ଗୋଡ଼ ବାନ୍ଧିଦିଅ । ପେଟିଏ ଭିତର

ଥିବା ନାଆଁରେ ତାକୁ ରକ୍ଷିଦିଅ । ଏହା ନାଉଯାରେ ନାଆଁଟି ନଈରେ ଭସେଇ ଦିଅ । ସେ ଉପାୟ ପଡ଼ି ମଡ଼ି ମରିବ । ଏଥିରେ ତୁମେ ନାରୀଘାତି ହେବ ନାହିଁ । ନରହତ୍ୟା ହେବ, କିନ୍ତୁ ରାଜଦଣ୍ଡରୁ ମୁକ୍ତି ମିଳିବ ।”

ବଣିକଟି ଭାବିଲା—ଗୁରୁଙ୍କର କଥା ଗ୍ରହଣ ଯୋଗ୍ୟ । ସେ ଖଣ୍ଡିଆଟିକୁ ତଳକୁ ପଠାଇ ଦେଲା । ଗୁରୁ ଯେପରି ପ୍ରସ୍ତାବ ଦେଲେ ତା ସେ ପାଳନ କଲା । ଦ୍ୱିତୀୟ ସ୍ତ୍ରୀର ଅନୁନୟ, ବିନୟ, ନେହୁରା, ନକୁଟା ଓ ଛାତିଫଟା କାନ୍ଦର ପ୍ରଭାବ ବଣିକ ଉପରେ କିଛି ପଡ଼ିଲା ନାହିଁ । ଡଙ୍ଗାଟିରେ ସାନ ସ୍ତ୍ରୀ ବନ୍ଧା ହୋଇ ପଡ଼ିଥିଲା । ଡଙ୍ଗାଟି ଭାସି ଭାସି ଚାଲିଲା ।

ପରଦିନ ସକାଳ । ବଣିକକୁ ସନ୍ନ୍ୟାସୀ କହିଲେ—“ବାବା ! ମୁଁ ତୋ ଘରେ ଅନେକ ଦିନ ରହିଲିଣି । ମୁଁ ପରିବ୍ରାଜକ । ତୀର୍ଥ ଦର୍ଶନରେ ମୋ ମନ । ଏବେ ମେଲାଣି ଦିଅ । ମୁଁ ଯାଏ । ମତେ ଅଟକାଇବାକୁ ଆଉ ଅନୁରୋଧ କର ନାହିଁ ।”

ବଣିକର ଗୁରୁଙ୍କଠାରେ ଅଚଳାଚଳ ଭକ୍ତି । ସେ ଗୁରୁଙ୍କୁ ମେଲାଣି ଦେଲା । ଗୁରୁ ଏକ ସିଧା ବାଟରେ ନଈର ତଳ ମୁଣ୍ଡକୁ ଚାଲିଗଲେ । ବଣିକ ସ୍ତ୍ରୀର ଡଙ୍ଗାଟିକୁ ଅପେକ୍ଷା କଲେ ।

ଏଣେ ବଣିକ ସ୍ତ୍ରୀ ଯେଉଁ ଡଙ୍ଗାରେ ଯାଇଥିଲା ତାହା ଭାସି ଭାସି ଯାଇ ଗୋଟିଏ ରାଜନଅର ପାଖେ ଲାଗିଲା । ଭାଗ୍ୟକୁ ସେତିକି-ବେଳେ ସେ ଦେଶର ରାଜା ପାରିଧିରୁ ଫେରୁଥାଆନ୍ତି । ସେ ଦିନଟିଯାକ ରାଜା ଜଙ୍ଗଲରେ ଖୁବ ବୁଲିଲେ । ଶିକାର କିଛି ପାଇଲେ ନାହିଁ । ଗୋଟିଏ ମାଈଭାଲୁ ହାବୁଡ଼ରେ ପଡ଼ିଲା । ତାକୁ ଧରି ସାଥିରେ ଆଣିଲେ ।

ଛପର ଡଙ୍ଗାଟିଏ ଭାସିଯାଉଛି, ଅଥଚ ସେଥିରେ ନାଉରି ନାହିଁ । ଏହା ରାଜା ଦେଖିଲେ । ତାଙ୍କ ମନରେ କୌତୁହଳ ସୃଷ୍ଟି ହେଲା । ସେ ଡଙ୍ଗାଟି ଅଟକାଇ ତା ଭିତରେ କଣ ଅଛି ଦେଖିବାକୁ ଆଦେଶ ଦେଲେ । କଟୁଆଳ ଆସି କହିଲା—"ମହାରାଜ ! ଡଙ୍ଗାଟିର ନାଉରି ନାହିଁ । କିନ୍ତୁ ଏକ ସୁନ୍ଦରୀ ଯୁବତୀର ହାତଗୋଡ଼ ବନ୍ଧା ହୋଇଛି, ସେ ମୁମୂର୍ଷୁ ଅବସ୍ଥାରେ ପଡ଼ିଛି ।"

ରାଜା ଡଙ୍ଗା ଭିତରକୁ ଢଜେ କଲେ । ସେବା ଯତ୍ନ ଫଳରେ ସ୍ତ୍ରୀଟିର ଚେତା ଆସିଲା । ସେ ସମସ୍ତ ବିଷୟ ରାଜାଙ୍କ ଆଗରେ ବର୍ଣ୍ଣନା କଲା ।

ଦୁଷ୍ଟ ସନ୍ନ୍ୟାସୀ ଏହି ଚକ୍ରାନ୍ତର ଯେ ହୃତ୍‌ପିଣ୍ଡ, ଏହା ରାଜାଙ୍କର ହୃଦ୍‌ବୋଧ ହେଲା । ସେ ସ୍ତ୍ରୀଟିକୁ ମୁକ୍ତ କରିଦେଲେ । ଯାଢ଼ଥିରୁ ଆଣିଥିବା ଭାଲୁଟିକୁ ଛପର ଡଙ୍ଗାରେ ରଖି କବାଟ ଆଉଜାଇ ଆଣିଲେ । ତାପରେ ଡଙ୍ଗାଟିକୁ ପୁଣି ନଈ ମଝିକୁ ଠେଲିଦେଲେ ।

ଅପେକ୍ଷାରତ ସନ୍ନ୍ୟାସୀ ଡଙ୍ଗାଟି ଭାସି ଆସୁଥିବାର ଦେଖି ଖୁବ୍ ଖୁସି । ନିଜେ ନଈ ଭିତରକୁ ସେ ଡେଇଁ ପଡ଼ିଲା । ପହଁରି ପହଁରି ଡଙ୍ଗା ଉପରକୁ ଚଢ଼ିଗଲା । ତାପରେ କବାଟ ଖୋଲି-ଦେଲା । ସେ ଆଉ ଯାଏ କୁଆଡେ ? ଭାଲୁ ତ ରାଗରେ ଜରଜର ହୋଇଥିଲା । ସନ୍ନ୍ୟାସୀକୁ ଦେଖି ସେ ଧାଇଁ ଆସିଲା । ତାକୁ ଧରି ଆମ୍ପୁଡ଼ି ବିଦାରି ମାରି ପକାଇଲା ।

ଅନ୍ୟାୟ କରିବାର ଯୋଜନା କଲେ ମଣିଷ ସେଇ ଅନ୍ୟାୟର ଶିକାର ହୁଏ ।



# ଅସୁର ଜ୍ୟୋତିଷ

ବୁଢ଼ାବୁଢ଼ୀ ଦୁଇଟି । ସେମାନେ ନିଃସନ୍ତାନ । ପିଲାଟିଏ ପାଇଁ ସେମାନେ ଉଦ୍‌ଭ୍ରାନ୍ତ ।

ସେମାନଙ୍କ ଗାଁକୁ ଲଗି ଜଙ୍ଗଲ । ସେଠି ଗୋଟେ ଅସୁର ରହେ । ସେ ଭାରି ଧୂର୍ତ୍ତ । ବୁଦ୍ଧିମାନ । ସେ ଜ୍ୟୋତିଷ ଶାସ୍ତ୍ରରେ ପ୍ରବୀଣ ।

ବୁଢ଼ା ବୁଢ଼ୀଙ୍କର ଦୁଃଖର କଥା ଅସୁର କାନରେ ପଡ଼ିଲା । ଦିନେ ସେ ଜ୍ୟୋତିଷ ବେଶରେ ତାଙ୍କ ଦୁଆର ମୁହଁରେ ହାଜର ହୋଇଗଲା ।

ବିନା ଡାକରାରେ ଜ୍ୟୋତିଷ ଆସିଥିବାରୁ ବୁଢ଼ା ବୁଢ଼ୀ ଭାରି ଖୁସି । ସେମାନେ ତାଙ୍କୁ ଅଭ୍ୟର୍ଥନା କଲେ । ପାଖରେ ବସାଇ ତାଙ୍କର ଦୁଃଖ କଥା ବର୍ଣ୍ଣନା କଲେ ।

ଅସୁରଟି ବୁଢ଼ା 'ବୁଢ଼ୀଙ୍କର ହାତ ବହୁତ ସମୟ ଦେଖିଲା । ତାପରେ ସେ ଗମ୍ଭୀର ହୋଇଗଲା । କିଛି ସମୟ ପରେ ଏକ ଦୀର୍ଘ ନିଃଶ୍ୱାସ ପକାଇଲା । ଏହା ଦେଖି ବୁଢ଼ା ବୁଢ଼ୀଙ୍କର ଧୈର୍ଯ୍ୟ ଆଉ ରହିଲା ନାହିଁ । ସେମାନେ ଅଧୀର ହୋଇ ପଚାରିଲେ—"ଚିରଦିନ ପାଇଁ ଆମେ କ'ଣ ହତଭାଗ୍ୟ ?"

ଅସୁରର ଉତ୍ତର ଥିଲା—'ନା' ।

ବୁଢ଼ା ବୁଢ଼ୀ ଉତ୍କଣ୍ଠା ସହ ପଚାରିଲେ—"ତାହା ହେଲେ ?"

ଅସୁରଟି କହିଲା—"ଆପଣଙ୍କର ଜାଆଁଳା ପିଲା ହେବାର ଯୋଗ ଅଛି ! କିନ୍ତୁ——"

ସେମାନେ ବ୍ୟସ୍ତ ହୋଇ ପଚ୍ଚାରିଲେ—"ସତ କଥା ଆମ ଆଗେ ଖୋଲି କରି କୁହନ୍ତୁ ।"

ଅସୁର କହିଲା—"ତମମାନଙ୍କର ଗୋଟିଏ ଦୋଷ ଅଛି । ଜଣେ ଗ୍ରହଦେବଙ୍କୁ ସନ୍ତୁଷ୍ଟ କଲେ, ତମମାନଙ୍କର ସେ ଦୋଷଟି କଟିଯିବ । ତାପରେ ପରେ ତମମାନଙ୍କର ଜାଆଁଳା ପିଲା ହେବେ । ସେମାନଙ୍କ ମଧ୍ୟରୁ ତୁମେ ଯଦି ଗୋଟିକୁ ଗ୍ରହଦେବଙ୍କୁ ଦାନ କରିବାକୁ ସତ୍ୟ ନକର, ତାହାହେଲେ ପିଲା ହେଲେ ବି ସେମାନେ ନଷ୍ଟ ହୋଇଯିବେ ।"

ବୁଢ଼ାବୁଢ଼ୀ ଦୁଇଜଣ ଆଲୋଚନା କଲେ । ଏମାନଙ୍କ ମତରେ ମୋଟରେ ପିଲା ନାହାନ୍ତି । ଜନ୍ମ ପିଲାରୁ ଗୋଟିଏ ଦାନ କଲେତ ଆଉ ଗୋଟିଏ ରହିବ । ଫଳରେ ସେମାନଙ୍କର ଆଣ୍ଟୁ କୁଡା ଦୋଷ ରହିବ ନାହିଁ ! ତାପରେ ବୁଢ଼ ବୁଢ଼ୀ କହିଲେ "ଆପଣ ତ ଗ୍ରହ ଦେବ । ଆମେ ଶପଥ କରୁଛୁ, ଆମର ପିଲା ଦି'ଟା ହୋଇ ବଞ୍ଚିଲେ, ଯୁବା ବୟସରେ ଆମେ ଜଣକୁ ତମକୁ ଦାନ କରିଦେବୁ ।"

ଜ୍ୟୋତିଷଟି ବଦାୟୁ ନେବାକୁ ବାହାରିଲା । ବୁଢ଼ାବୁଢ଼ୀ କହିଲେ—"ଆମର ତମକୁ କିଛି ଦାନ କରିବାର କଥା । କ'ଣ ନେଲେ ତୁମେ ସନ୍ତୁଷ୍ଟ ହେବ, କୁହ । ଆମେ ତାହାହିଁ ତମକୁ ଦାନ ଦେବୁ ।"

ଜ୍ୟୋତିଷ କହିଲା—"ଗୋ ଦାନଠାରୁ ବଳି ଦାନ ନାହିଁ । ମତେ ଗୋଟିଏ ଗୋରୁ ଦେଇଦିଅ । ମୁଁ ସନ୍ତୁଷ୍ଟ ହେବି ।"

ବୁଢ଼ାବୁଢ଼ୀ ଦୁଇ ଜଣଯାକ ଜ୍ୟୋତିଷର ପ୍ରସ୍ତାବରେ ଘର ଖୁସି । ତାଙ୍କର ଗୋଟିଏ ଦାମୁଡ଼ ଥିଲା । ସେଇଟିକୁ ସେମାନେ ଜ୍ୟୋତିଷକୁ ଦାନ ଦେଲେ ।

ଅସୁରଟି ଦାମୁଡ଼ ଧରି ଘରେ ପହଞ୍ଚିଲା । ତାକୁ ମାରି ମାଂସ କରି ବଢ଼ିଆ ଭୋଜନଟିଏ କଲା ।

ସେଇ ଘଟଣାର ଦଶମାସ ପରେ ବୁଢ଼ାବୁଢ଼ୀଙ୍କର ଜାଆଁଳା ପୁଅ ହେଲେ । ପିଲା ଦୁଇଟି ଖୁବ୍ ସୁନ୍ଦର । ଗୁହ୍ମ ପରି ଚେହେରା । ବେଶ୍ ସୁସ୍ଥ, ସବଳ ଓ ସୁଠାମ ।

ପିଲା ଦି'ଟା ଜନ୍ମ କଲା ପରି ହୁ ହୁ ବଢ଼ିଗଲେ, ବୁଢ଼ାବୁଢ଼ୀଙ୍କର ସେ ଦୁହେଁ ପ୍ରାଣ । ତାଙ୍କୁ ଦେଖିଲେ ବୁଢ଼ାବୁଢ଼ୀ ପାଗଳ ।

ବାପା ମା ତାଙ୍କର ଉଚିତ ଶିକ୍ଷା ପାଇଁ ବ୍ୟବସ୍ଥା କରି-ଦେଲେ । ସେମାନଙ୍କର ତ ପାଠ ପ୍ରତି ଆଗ୍ରହ ବହୁତ । ସେମାନେ ସମସ୍ତ ଶିକ୍ଷା ସମାପ୍ତ ପରେ ଯୁଦ୍ଧ ବିଦ୍ୟା ଶିଖିଲେ । ଧନୁର୍ବିଦ୍ୟାରେ ଉଭୟେ ଧୂରନ୍ଧର ।

ସେମାନେ ଶିକାରପ୍ରିୟ । ଦେଶ ଭ୍ରମଣ କରିବାକୁ ସେମାନଙ୍କର ଆଗ୍ରହ ବହୁତ । ଏ ଦୁଇ କାମରେ ସେମାନେ ତାଙ୍କର ସମସ୍ତ ସମୟ ବିତାଇ ଦିଅନ୍ତି ।

ଦିନେ ଅସୁରଟି ଜ୍ୟୋତିଷ ବେଶରେ ବୁଢ଼ାବୁଢ଼ୀଙ୍କ ପାଖରେ ପହଞ୍ଚିଗଲା । ସେତେବେଳକୁ ପୁଅ ଦି'ଟା ଘରେ ନଥାନ୍ତି । ଜ୍ୟୋତିଷକୁ ଦେଖି ବୁଢ଼ାବୁଢ଼ୀ ସମ୍ମାନ ଦେଲେ । ଅଭ୍ୟର୍ଥନା କରି ବସାଇଲେ । ଅସୁରଟି ସେମାନଙ୍କର କୁଶଳ ପଚାରିଲା । ତାପରେ ସେମାନେ କରିଥିବା ପ୍ରତିଜ୍ଞା କଥା ସ୍ମରଣ କରାଇ ଦେଲା ।

ବୁଢ଼ା ବୁଢ଼ୀଙ୍କର ସବୁକଥା ମନେ ପଡ଼ିଲା । ସେଦିନ ଆଉ ଆଜି ଭିତରେ ବହୁତ ତଫାତ । ପୁଅ ନ ହେବା ବେଳେ ନହେବା ଦେବା ଦୋଷରେ । ଯୁବକ ପୁଅକୁ ପରକୁ ଦେବା ଅତି କଷ୍ଟ । ସେ କଥା ସେମାନେ ଅନୁଭବ କଲେ । କିନ୍ତୁ ସେମାନେ ପ୍ରତିଜ୍ଞା ବଦ୍ଧ । ଅନ୍ୟ ଉପାୟ ତାଙ୍କର ନାହିଁ । ବଡ଼ ପୁଅକୁ ସେମାନେ ଅସୁରକୁ ଦେବେ ବୋଲି ସ୍ଥିର କଲେ ।

ଦୁଇଭାଇ ଫେରିବାରୁ ବୁଢ଼ାବୁଢ଼ୀ ସବୁକଥା ସେମାନଙ୍କ ଆଗରେ କହିଲେ । ତା ଛଡ଼ା ସେମାନେ ପ୍ରତିଜ୍ଞା କରିଛନ୍ତି, କଥା ନ ରଖିଲେ, ନର୍କରେ ପଡ଼ିବେ । ଏଥିରେ ତାଙ୍କର ସନ୍ଦେହ ନାହିଁ । ସେକଥା ପୁଅ ଦୁହିଁଙ୍କୁ ବୁଝାଇ ଦେଲେ ।

ବଡ଼ଭାଇ ସାନ ଭାଇକୁ କହିଲା—"ଭାଗ୍ୟରେ ଯାହା ଥିବ, ତାହାହିଁ ଭୋଗିବାକୁ ହେବ । ଆମର ବିଚ୍ଛେଦ ଯୋଗଅଛି । ସେଥିରେ ଦୁଃଖ କରି ଲାଭ କିଛି ନାହିଁ । କିନ୍ତୁ ମୁଁ ବାରିରେ ତୁଳସୀ ଗଛଟିଏ ଲଗାଇଛି । ସେଇଟି ମୋର ଜୀବନ । ଯଦି ତୁଳସୀ ଗଛଟି ଝାଉଁଳି ପଡ଼ି ମରିଯିବ, ତାହାହେଲେ ଜାଣିବୁ ଯେ ମୁଁ ଆଉ ଏଇ ସଂସାରରେ ନାହିଁ ।"

ସାନଭାଇ ବଡ଼ ଭାଇକୁ ଧରି ଖୁବ୍ କାନ୍ଦିଲା । ବଡ଼ଭାଇ ବାପ-ମା ଓ ସାନଭାଇଠାରୁ ବିଦାୟ ନେଇ ବାହାରିଲା । ଆଗରେ ଅସୁର, ପଛେ ପଛେ ତାର ସେ ଚାଲିଲା ।

ସେମାନେ ବସ୍ତା ଘଞ୍ଚ ବୁଦୁବୁଦିଆ ଜଙ୍ଗଲରେ ପଶିଲେ । ତାପରେ ଘନ ଜଙ୍ଗଲକୁ ଆସିଲେ । ଜ୍ୟୋତିଷର ଢଙ୍ଗଢାଙ୍ଗ ଦେଖି ପୁଅଟିର ସନ୍ଦେହ ହେଉଥାଏ । କିନ୍ତୁ ସେ କିଛି ନ କହି ଅସୁର

ପଛରେ ଚାଲିଥାଏ । ଶେଷରେ ସେମାନେ ଗୋଟିଏ ମେଳ ଜାଗାରେ ପହଞ୍ଚିଲେ । ସେଠି ଅସୁର କହିଲା—"ପୁଅରେ ଏତେ ବାଟ ଚାଲି ଚାଲି ତୁ କ୍ଳାନ୍ତ ଓ ଅବସନ୍ନ ହୋଇ ପଡ଼ିଥିବୁ । ଏଠି ଟିକିଏ ବିଶ୍ରାମ କର । ମୁଁ ଏଇ ଆଗକୁ ଯାଉଛି । ଆସିଲେ, ସାଥି-ହୋଇ ଘରକୁ ଯିବା ।"

ପୁଅଟି ଅସୁର କଥାରେ ମୁଣ୍ଡ ଟୁଙ୍ଗାରି ବସିଲା । ଅସୁର ଚାଲିଗଲା ।

ପୁଅ ମନରେ କିନ୍ତୁ ବହୁତ ସନ୍ଦେହ । ସେ ସେଠି ବସି ପାରିଲା ନାହିଁ । ଲୁଚି ଲୁଚି ଅସୁର ପିଛା ଧରିଲା । କିଛି ବାଟ ଆସିଲା ପରେ ସେ ଦେଖିଲା—ମଣିଷ ହାଡ଼ ଓ ଗୋରୁ ହାଡ଼ ଠା'କ ଠା' ଜମା ହୋଇଛି । ଅଥଚ ଆଖ ପାଖରେ ଘରଦ୍ୱାର ନାହିଁ । ଜ୍ୟୋତିଷଟି ମଣିଷ କି ଅସୁର ସେ ଦ୍ୱନ୍ଦ୍ୱରେ ପଡ଼ିଲା । ଏତିକିବେଳେ ମଣିଷ ଖପୁରିମାନେ କହି ଉଠିଲେ—"ତୁ କେଉଁଠୁ ଆସିଛୁ ?"

ଖପୁରି ଯେ କଥା କହନ୍ତି, ସେ କାନ ଦେଲା ଦିନୁ ଶୁଣି ନଥିଲା । ଖପୁରିଙ୍କ କଥା କହିବା ଦେଖି ସେ ଆଶ୍ଚର୍ଯ୍ୟ । ପାଟିରୁ ତାର କଥା ବାହାରିଲା ନାହିଁ ।

ସେମାନେ ପୁଣି ଗର୍ଜି ଉଠିଲେ—"ହେ ଯୁବକ ! ତୁ କେଉଁଠୁ ଆସିଛୁ, ତାହା ଆମକୁ ଶୀଘ୍ର କହ । ଆମେ ଉପାୟ ବତାଇ ଦେବୁ । ଫଳରେ ତୋ ଜୀବନ ରକ୍ଷା ହୋଇଯିବ । ନଚେତ ତୋର ଅବସ୍ଥା ଆମପରି ହେବ ।"

ଯୁବକଟିର ଏ କଥା ଶୁଣି ହୋସ ହେଲା । ଛାତିରେ ସାହସ ପଶିଲା । ସେ ଗଡଗଡ ହୋଇ ସମସ୍ତ କଥା କହିଗଲା ।

ଖପୁରମାନେ କହିଲେ—"ଯେଉଁ ଜ୍ୟୋ ଭକ୍ଷ ତୋତେ ଆଣିଛି, ସେ ମଣିଷ ନୁହ । ଅସୁର । ଆମମାନଙ୍କୁ ଫୁସୁଲେଇ କରି ଆଣିଥିଲା । ଆମ ବାପମା ଆନନ୍ଦରେ ତା ହାତରେ ଆମକୁ ଟେକି ଦେଇଥିଲେ । ଆମକୁ ସେ ଖାଇଲା । ଆମର ଖପୁର ଏଠି ପଡ଼ିଛି । ହାଡ଼ ସେଠି ଜମା ହୋଇଛି । ତୋତେ ବସାଇ ସେ ଗାଧୋଇ ଯାଇଛି । ଫେରିଲେ, ତୋତେ ସେ ଖାଇବ । ତୁ ଦୌଡ଼ିକରି ଏଠୁ ପଳା । ଯଦି ଦୌଡ଼ିକରି ପଳାଇବାର ସାମର୍ଥ୍ୟ ତୋର ନାହିଁ, ଏଇ ଯେଉଁ ଘର ଦେଖା ଯାଉଛି, ସେଠାକୁ ଯା । ସେଠି ଦେଖିବୁ, ଗୋଟିଏ ଖଣ୍ଡା ଝୁଲୁଛି । ସେଇ ଖଣ୍ଡାରେ ସେ ଆମକୁ ହାଣି ଖାଇଛି । ତୋତେ ବି ହାଣି କରି ଖାଇବ । ତେଣୁ ତୁ ସେ ଖଣ୍ଡାଟି ଖୋଲିଦେବୁ । କବାଟ କଣରେ ଲୁଚି ରହିବୁ । ହାତରେ ତୋର ଖଣ୍ଡା ଥିବ । ସେ ଯେମିତି ଘର ଭିତରେ ପଶିବ, ତୁ ଖଣ୍ଡାରେ ଏମିତି ଚୋଟ ଦେବୁ ଯେ ତାର ମୁଣ୍ଡ ଗଣ୍ଡିରୁ ଅଲଗା ହୋଇଯିବ । ମୁଣ୍ଡ ଯଦି ସମ୍ପୂର୍ଣ୍ଣ ଭାବରେ ନ ଛିଣ୍ଡେ, ସେ ବଞ୍ଚିଯିବ । ତାପରେ ତୋର ଆଉ ନସ୍ତାର ନାହିଁ ।"

ଯୁବକଟି ସେମାନଙ୍କ କଥା ମନ ଦେଇ ଶୁଣୁଥିଲା । ଖପୁରମାନେ କହିଲେ—"ଯଦି ତୁ ଆମର ମଙ୍ଗଳ ଚାହୁଁ, ତାହାହେଲେ ସେଇ ଅସୁର ରକ୍ତ ଆଣି ଆମ ଉପରେ ଛିଞ୍ଚିଦେବୁ । ଆମେ ପୁଣି ବଞ୍ଚି ଉଠିବୁ ।

ଯୁବକଟିର ସାହସ ବହୁତ । ସେ ଦୌଡ଼ିକରି ପଳାଇଲା ନାହିଁ । ବରଂ ଘର ପାଖକୁ ଗଲା । ଖପୁରମାନେ ଯାହା କହିଥିଲେ, ତାହା ଅକ୍ଷରେ ଅକ୍ଷରେ ପାଳନ କଲା । ସେ ଅସୁରକୁ ତ ମାରିଲା, ତାର ରକ୍ତ ସବୁ ଖପୁରି ଉପରେ ଛିଞ୍ଚିଲା । ଫଳରେ [illegible] ଯୁବକ

ଯାଇଁ ଉଠିଲେ । ସେଠି ବହୁ ଯୁବକଙ୍କର ସମାବେଶ ହୋଇଗଲା । ସେମାନେ ଯୁବକଟିକୁ କୃତଜ୍ଞତା ଜଣାଇଲେ ।

ଯୁବକଟି ଅସୁରର ଘୋଡ଼ାଶାଳକୁ ଗଲା । ସେଠାରେ ସବୁଠାରୁ ବଳବାନ ଘୋଡ଼ାକୁ ନିଜପାଇଁ ସେ ରଖିଲା । ଅନ୍ୟ ମାନଙ୍କୁ ଅନ୍ୟ ଘୋଡ଼ା ସବୁ ଦେଇଦେଲା । ଯେଝା ବାଟରେ ଚଲି ଗଲେ ।

ଯୁବକଟି ଆସୁ ଆସୁ ବାଟରେ ଗୋଟିଏ ଅସୁରୁଣୀ ରାଜ୍ୟରେ ପହଞ୍ଚିଗଲା । ଅସୁରୁଣୀ ମାୟାବୀ । ଶିକାରୀ ଦେଖିଲେ ସେ ଗୋଟିଏ ସୁନ୍ଦର ହରଣ ହୋଇଯାଏ । ତାକୁ ଦେଖିଲେ ଶିକାରୀର ଲୋଭ ହୁଏ । ତାକୁ ପ୍ରଲୋଭିତ କରିବା ପାଇଁ ସେ ଶିକାରୀଠାରୁ ଅଳ୍ପ ଦୂରରେ ଧାଏଁ । ଶିକାରୀଟିର ଲୋଭ ବଢିଯାଏ । ଫଳରେ ତାର ବୁଦ୍ଧି ହଜିଯାଏ । ସେ ଆଗରେ ଗୋଟେ ଗୁମ୍ଫାରେ ପଶେ । ଆପେ ପଛେ ପଛେ ତା'ର ଶିକାରୀ । ଆପେ ଗୁମ୍ଫା କବାଟ ବନ୍ଦ ହୋଇଯାଏ । ଅଣନିଃଶ୍ୱାସୀ ହୋଇ ଶିକାରୀ ମରେ । ଅସୁରୁଣୀ ତାକୁ ଆନନ୍ଦରେ ଖାଏ ।

ଯୁବକଟି ଅସୁରୁଣୀର ପାଲରେ ପଡ଼ିଗଲା । ଅସୁରୁଣୀ ଗୁମ୍ଫା ଦ୍ୱାର ବନ୍ଦ କରି ଦେବାରୁ ଶିକାରୀ ଅଚେତ ହୋଇଗଲା । ତାର ଘୋଡ଼ାଟି ମରିଗଲା । ଅସୁରୁଣୀଟି ଯୁବକଟି ଯେ ମରିନାହିଁ, ସେକଥା ଜାଣିପାରିଲା ନାହିଁ । ଘୋଡ଼ାର ମାଂସ ସୁଆଦିଆ ବୋଲି ତାକୁ ସେ ଖାଇଲା । ପରଦିନ ପାଇଁ ଯୁବକକୁ ରଖିଲା ।

ତୁଳସୀ ଗଛଟି ଝାଉଁଳି ପଡ଼ିବାରୁ ସାନଭାଇ ଜାଣିଲା ଯେ ବଡ଼ ଭାଇର ଅବସ୍ଥା ସାଙ୍ଘାତିକ । ସେ ତ ଜ୍ୟୋତିଷ ବିଦ୍ୟାରେ ପାରଙ୍ଗମ । ସେ ଖଡ଼ି ପକାଇଲା । ବଡ଼ଭାଇ କେଉଁଠି ଆଉ କିଭଳି

ଘରରେ ଅଛି, ତାକୁ ଜାଣିବାକୁ ସୁବିଧା ହେଲା । ସେ ଘୋଡ଼ାରେ ଚଢ଼ି ଓ ହାତରେ ଧନୁଧରି ବାହାରି ପଡ଼ିଲା ।

ସାନଭାଇକୁ ଦେଖି ଅସୁରୁଣୀ ପୁଣି ନିଜକୁ ହରିଣ କରିଦେଲା । ତା ଆଗେ ଆଗେ ଅଳ୍ପ ଦୂରରେ ଧାଇଁଲା । ସାନ ଭାଇ ଜାଣେ ଯେ ଆଗରେ ଧାଉଁଥିବା ହରିଣ ପ୍ରକୃତରେ ହରିଣ ନୁହେଁ । ଅସୁରୁଣୀ । ସେ ନିଜକୁ ମନ୍ତ୍ର ବଳରେ ବାଘ କରି ଦେଲା । ତାପରେ ହରିଣ ପଛରେ ଧାଇଁଲା । ଅସୁରୁଣୀ ପ୍ରମାଦ ଗଣିଲା । ସେ ନିଜେ ବିଷମ ଅବସ୍ଥାରେ ପଡ଼ି ଗଲାଣି, ଏଥିରେ ତାର ସନ୍ଦେହ ନଥିଲା । ନିଜକୁ ବଞ୍ଚାଇବା ପାଇଁ ସେ ସାପ ହୋଇଗଲା । ସାନଭାଇ ବାଘରୁ ନିଜକୁ ନେଉଳ କରି ସାପକୁ ଧରି ପକାଇଲା । ତାପରେ ତାକୁ ଟିକିଟିକି କରି କାଟି ପକାଇଲା ।

ସେ ଗୁମ୍ଫାକୁ ଗଲା । ସେଠି ଦେଖିଲା ଯେ ବଡ଼ ଭାଇର ନିଃଶ୍ୱାସ ପଡ଼ୁଛି । ତାର ଯତ୍ନ ନେଲା । ବଡ଼ ଭାଇର ଚେତା ଫେରି ଆସିଲା । ସାଥି ହୋଇ ସେମାନେ ଘରକୁ ଫେରିଲେ । ଆନନ୍ଦରେ ରହିଲେ ।

ବାପ ମା ଦୁଇ ପୁଅକୁ ଦେଖି ଆନନ୍ଦରେ ଅଧୀର । କିନ୍ତୁ ସେମାନେ ପୁଅ ଦୁହିଁଙ୍କୁ କହିଲେ—"ଅଜଣା ଲୋକର କଥାରେ କେବେହେଲେ ଭାଇ କେବ ନାହିଁ । ସେଥିରେ ବିପଦ ଅଛି । ସେଥିପାଇଁ ହୁସିଆର ରହିଥିବ ।"

—

# ଠିକ ଜ୍ଞାନୀ

ବହୁତ ଦିନ ତଳର କଥା । ସେତେବେଳେ ଭାରତରେ ନବଦ୍ୱୀପ ଶିକ୍ଷା ପାଇଁ ପ୍ରସିଦ୍ଧ ଥିଲା । ତିନିଜଣ ଯୁବକ ସେଠାରେ ଶିକ୍ଷା ସମାପ୍ତ କରି ଫେରୁଥିଲେ । ବାଟରେ ଗୋଟିଏ ମଇଁଷିର ପାଦଚିହ୍ନ ସେମାନେ ଦେଖିଲେ । ସେମାନଙ୍କ ଭିତରୁ ଜଣେ କହିଲା —"ଭାଇମାନେ ! ଏହା ମାଈ ମଇଁଷିର ପାଦଚିହ୍ନ ।" ଦ୍ୱିତୀୟ ଜଣକ କହିଲା --"ହଁ ଭାଇ ! ତା ସାଥିରେ ବାଛୁରୀଟିଏ ଅଛି ।" ତୃତୀୟ ଜଣକ କହିଲା—"ସେ ଏବେ ଆଉ ବାଛୁରୀଟିଏ ପ୍ରସବ କରିଛି ।"

ସେମାନଙ୍କ କଥା କେତେଦୂର ସତ୍ୟ ତାହା ପରୀକ୍ଷା କରିବା ପାଇଁ ସେମାନେ ପାଦଚିହ୍ନକୁ ଅନୁସରଣ କଲେ । ସେମାନେ ମଇଁଷିଟିକୁ ଦେଖିଲେ । ତାଙ୍କର ଅନୁମାନ ଠିକ୍ ହୋଇଥିବାରୁ ଭାରି ଖୁସି ହେଲେ ।

ସେ ମଇଁଷିଟି ରାଜାଙ୍କର । ତିନିଦିନ ତଳେ ସେ ସେଠାରୁ ହଜି ଯାଇଥିଲା । ରାଜାଙ୍କ କର୍ମଚାରୀମାନେ ତାକୁ ଖୁବ୍ ଖୋଜି ଥିଲେ । କିନ୍ତୁ ତାର ସନ୍ଧାନ ପାଇ ନ ଥିଲେ । ନିଜ କଥାର ସତ୍ୟତା ଜାଣିବା ପାଇଁ ଯୁବକ ତିନିଜଣ ଯେତେବେଳେ ମଇଁଷି ପାଖରେ ପହଞ୍ଚି ଗଲେ, ଠିକ୍ ଏତିକିବେଳେ ରାଜକର୍ମଚାରୀମାନେ ସେଠି ଆସି ହାଜର । ଯୁବକ ତିନିଜଣଙ୍କୁ ସେମାନେ ଚୋର ବୋଲି ଭାବିଲେ । ସେମାନେ ଏ ତିନି ଜଣଙ୍କୁ ବାନ୍ଧି ରାଜାଙ୍କ ପାଖରେ ହାଜର କରାଇଲେ । ରାଜା କିନ୍ତୁ ସେମାନଙ୍କଠାରୁ କିଛି ବୁଝିଲେ ନାହିଁ । ତାଙ୍କୁ ସିଧା ଜେଲକୁ ପଠାଇ ଦେଲେ ।

ଜେଲରେ ପଶିଲାବେଳେ ପ୍ରଥମ ଜଣକ କହିଲା—"ଭାଇମାନେ ଶୁଣ । ସେ ଏହା ନୁହେଁ କିନ୍ତୁ ତାହା ।"

ଦ୍ୱିତୀୟ ଜଣକ କହିଲା—"ତାହାଁକ ? ସେ ଯଦି ତାହା ହୋଇଥାଆନ୍ତା, ସେ ଏହା କରୁଥାଆନ୍ତା ।"

ତୃତୀୟ ଜଣକ କହିଲା—"ସେ କ'ଣ ତାହା କରିନାହିଁ ?"

ଏ ପ୍ରକାର କଥାବାର୍ତ୍ତା ଶୁଣି ଜେଲ ରକ୍ଷକ ଆଶ୍ଚର୍ଯ୍ୟ । ସେ ବହୁତ ଚିନ୍ତା କଲେ । କିନ୍ତୁ ସେ କଥାର କୌଣସି ଅର୍ଥ ପାଇଲେ ନାହିଁ । ଶେଷକୁ ରଜାଙ୍କ କାନକୁ ସେ ଏକଥା ଆଣିଲେ ।

ରଜାଙ୍କ ଆଦେଶରେ ସେଇ ତିନିଜଣ ଯୁବକଙ୍କୁ ଦରବାରରେ ହାଜର କରାଗଲା । ରଜା କହିଲେ—"ମୁଁ ତମମାନଙ୍କ କଥାବାର୍ତ୍ତା ଶୁଣିଛି । ସେମାନେ ତାର ଅର୍ଥ ବୁଝାଇ କୁହ । ନହେଲେ, ତୁମମାନଙ୍କୁ ପ୍ରାଣଦଣ୍ଡ ମିଳିବ ।"

ତିନିଜଣଯାକ ଭାବିଲେ ଅର୍ଥ ନ କହିଲେ ମୃତ୍ୟୁ ଦଣ୍ଡ । କହିଲେ, ତାଠାରୁ ଅଧିକ ଦଣ୍ଡ ତ ମିଳିବ ନାହିଁ । ତେବେ କହିଲେ କ୍ଷତି କଣ । ତେଣୁ ସେମାନେ ଅର୍ଥ କହିବା ପାଇଁ ସ୍ଥିର କଲେ ।

ପ୍ରଥମ ଜଣକ କହିଲା—"ମହାରାଜ ! ମୁଁ କହିଥିଲି 'ଏହା ନୁହେଁ ତାହା' । ତାର ଅର୍ଥ ଏଠାକାର ରଜା ମଣିଷ ନୁହଁ । ବଳଦ ।"

ଦ୍ୱିତୀୟ ଜଣକ କହିଲା—"ମୁଁ କହିଥିଲି, ଯଦି ସେ ତାହା ହୋଇଥାଆନ୍ତା, ସେ ତ ଏହା କରୁଥାଆନ୍ତା । "ତା ଅର୍ଥ ଯଦି ସେ ବଳଦଟିଏ ହୋଇଥାଆନ୍ତା, ତା'ହେଲେ ସେ ଘାସ ଖାଉଥାଆନ୍ତା ।"

ତୃତୀୟ ଜଣକ କହିଲା—"ହେ ପ୍ରଭୁ ! ମୁଁ କହିଥିଲି ସେ କଣ ତାହା କରିନାହିଁ ? ଅର୍ଥାତ୍ ରଜା ବଳଦ ଭଳି

ବୋଲାଗଲା ବ୍ୟବହାର କରୁନାହିଁ ?" ତାପରେ ବିନଜଣଯାକ ଚୁପ୍ ରହିଲେ ।

ରାଜା ପଚାରିଲେ—"ତୁମେମାନେ ମତେ ବଳଦ ବୋଲି କାହିଁକି କହିଲ ?" ପ୍ରଥମ ଜଣକ କହିଲା—"ଆମେ ତିନିଜଣଯାକ ବ୍ରାହ୍ମଣ । ନବଦ୍ୱୀପରେ ଜ୍ୟୋତିଷ, ଦର୍ଶନ ପ୍ରଭୃତି ବହୁବିଦ୍ୟାରେ ପ୍ରବୀଣ ହୋଇଛୁ । ବାଟରେ ଆମେ ଗୋଟିଏ ମଇଁଷିର ପାଦଚିହ୍ନ ଦେଖିଲୁ । ମୁଁ ମୋର ବନ୍ଧୁମାନଙ୍କୁ କହିଲି "ଏହା ଏକ ମାଈ ମଇଁଷିର ପାଦଚିହ୍ନ । ଦ୍ୱିତୀୟ ବନ୍ଧୁ କହିଲା ତା' ଆଖିବି ଗୋଟିଏ କାଣୁଆ ଅଛି । ତୃତୀୟ ଜଣେ କହିଲା, ହଁ ଏହା ଏକ କଅଁଳା ମାଈ କାଣୁଆ । ଏହାର ସତ୍ୟାସତ୍ୟ ଜାଣିବା ପାଇଁ ଆମ୍ଭେମାନେ ପାଦଚିହ୍ନ ଅନୁସରଣ କଲୁ । ମାଈ ମଇଁଷିଟିକୁ ଦେଖି ଅବେ ଜାଣିଲୁ ଯେ, ଆମ ଗଣନା ସମ୍ପୂର୍ଣ୍ଣ ହେବେ ଠିକ୍ । ଏଇ କଥା-ବାର୍ତ୍ତା ହେଉଥିବାବେଳେ ଆପଣଙ୍କ ଲୋକେ ସେଠି ପହଞ୍ଚିଲେ । ସେମାନେ କିଛି ନ ବୁଝି ନ ଶୁଣି ଆମକୁ ଚୋର ବୋଲି କହିଲେ । ତାପରେ ଆମକୁ ହାତକଡ଼ି ପକେଇ ଏଠାକୁ ନେଇ ଆସିଲେ । ତୁମ୍ଭେ ଆମକୁ କିଛି ପଚାରିଲେ ନାହିଁ । ବନ୍ଦୀ ଘରରେ ହାଜତକୁ ଠେଲି ଦେଲେ । ଯେଉଁ ରାଜା ବିଚାର ନକରି ଦଣ୍ଡ ଦିଏ, ସେ ଆମ ମତରେ ମଣିଷ ନୁହେଁ, ବଳଦ ।"

ତାପରେ ରାଜା କହିଲେ—"ହଁ, ମୁଁ ତମମାନଙ୍କ ପ୍ରତି ଅନ୍ୟାୟ କରିଛି । ଆଜିଠାରୁ କୌଣସି ସ୍ୱତ ନ ଶୁଣି ମୁଁ କାହାକୁ ଆଉ ଦଣ୍ଡ ଦେବି ନାହିଁ ।"

ରାଜା ସେମାନଙ୍କୁ ଯଥେଷ୍ଟ ପୁରସ୍କାର ଦେଇ ଘରକୁ ବିଦା କରିଦେଲେ ।



# ହାତୀ ଓ ପେଚା

ଜଙ୍ଗଲରେ ଗୋଟିଏ ବିରାଟ ବରଗଛ । କେଉଁ କାଳରୁ ସେ ସେଠି ଠିଆ ହୋଇଛି, ତାହା କହି ହେବ ନାହିଁ । ସେଥିରେ ଗୋଟିଏ କୋରଡ଼ । ସେଇଠି ପେଚାଟିଏ ରହେ । ବରଗଛକୁ ଲାଗି ସୁଆ । ସେଇବାଟେ ହାତୀଟିଏ ନଈକୁ ଯାଏ । ପାଣି ପିଏ । ପୁଣି ସେଇ ବାଟରେ ଫେରେ । ପ୍ରତିଦିନ ପେଚା ହାତୀକୁ ଆଉ ହାତୀ ପେଚାକୁ ଦେଖେ । କିନ୍ତୁ କାହାର ତାହା ସାଥିରେ କଥାବାର୍ତ୍ତା ନାହିଁ ।

ଥରେ ବର୍ଷା ହେଲା । ନାହିଁ ନ ଥିବା ପବନ ବୋହିଲା । ବରଗଛଟି ସେଥିରେ ଟଳି ପଡ଼ିଲା । ଏଥର ପେଚାଟି ବାସହୀନ । କୋରଡ଼ରେ ତାର ଦୁଇଟି ଛୁଆ । କ'ଣ ସେ କରିବ ଭାବି ପାରିଲା ନାହିଁ । ତାର ଜଣାଶୁଣା ସାଙ୍ଗସାଥି ସମସ୍ତଙ୍କୁ ସେ ତା'ର ଦୁଃଖ ଜଣାଇଲା । କିନ୍ତୁ କେହି ତାକୁ ସାହାଯ୍ୟ କଲେ ନାହିଁ । ଶେଷକୁ ସେ ହାତୀ ପାଖକୁ ଗଲା । ତା'ର ଦୁଃଖ ହାତୀକୁ ଜଣାଇଲା । ତାପରେ ବିନୟ ଭାବରେ ନିବେଦନ କଲା—"ତୁମେ ଯଦି ଦୟାକରି ଗଛଟିକୁ ଟେକି ଦିଅନ୍ତ, ମୋତେ ଆଉ କେଉଁଠିକୁ ଯିବାକୁ ପଡ଼ନ୍ତା ନାହିଁ । ମୁଁ ଏଇଠି ପିଲାମାନଙ୍କୁ ଧରି ରହିପାରନ୍ତି । ମୋର ସଂସାର ଉଚ୍ଛନ୍ନ ହୁଅନ୍ତା ନାହିଁ ।"

ହାତୀର ପେଚାଟି ପ୍ରତି ଦୟା ହେଲା । ସେ ପେଚା କଥା ମାନିଲା । ଗଛଟିକୁ ଟେକି ସିଧା କରିଦେଲା । ଗଛଟି ଯେମିତି ଥିଲା, ସେମିତି ପୁଣି ରହିଲା ।

ସେଇଦିନୁ ହାତୀ ଓ ପେଚା ଘନିଷ୍ଠ ବନ୍ଧୁ । ସେମାନଙ୍କର ଅଭେଦ ପ୍ରୀତି ।

ବାଘଟି ପାର୍ବତୀ ଦେବୀଙ୍କ ବାହନ । ଦିନେ ସେ ରାତିରେ ସ୍ୱପ୍ନ ଦେଖିଲା— ସେ ଗୋଟିଏ ହାତୀ ମୁଣ୍ଡ ଖାଉଛି । ସେ ସ୍ୱପ୍ନର ଅର୍ଥ ବୁଝିପାରିଲା ନାହିଁ । ଶିବ ପାର୍ବତୀ ଦେବୀଙ୍କର ସ୍ୱାମୀ । ସେ ତାଙ୍କ ପାଖକୁ ଗଲା । ଏ ସ୍ୱପ୍ନର ଅର୍ଥ ପଚାରିଲା । ଶିବ ତ ଭୋଳାନାଥ । ସେ ବାଘକୁ କହିଲେ—"ସ୍ୱପ୍ନ ସତ୍ୟ ହୁଏ । ତୁ ଯଦି ହାତୀ ମୁଣ୍ଡ ଖାଇବାର ସ୍ୱପ୍ନ ଦେଖିଛୁ, ତୁ ଯା ହାତୀର ମୁଣ୍ଡକୁ ଖା' ।"

ଶିବଙ୍କର ବର ପାଇ ବାଘ ହାତୀ ପାଖକୁ ଆସିଲା । ନଈ କୂଳରେ ହାତୀକୁ ଅପେକ୍ଷା କଲା । ପାଣି ପିଇବାକୁ ହାତୀ ଯେମିତି ଗଲା, ବାଘ କହିଲା—"ବଡ଼ଭାଇ ! କାଲି ରାତିରେ ମୁଁ ତୋ ମୁଣ୍ଡ ଖାଉଥିବାର ସ୍ୱପ୍ନ ଦେଖିଲି । ମୁଁ ସକାଳେ ଶିବଙ୍କ ପାଖକୁ ଗଲି । ଏ ସ୍ୱପ୍ନ ସତ୍ୟ ହେବକି ବୋଲି ପଚାରିଲି, ଶିବ ଏହା ସତ୍ୟ ହେବ ବୋଲି କହିଲେ । ଶିବ ମୋତେ ତୋର ମୁଣ୍ଡ ଖାଇବାକୁ ଆଦେଶ ଦେଲେ । ମୁଁ ତୋତେ ସମୟ ଦେଉଛି । ଏହା ଭିତରେ ତୁ ଯାହା କରିବାର କଥା କର । ଯାହା ସବୁ ଅଡୁଆ ଅଛି, ତାକୁ ତୁ ତୁଟାଇ ଦେ ।"

ଏ କଥା ଶୁଣି ହାତୀଟି ଡରିଗଲା । କ'ଣ କରିବାକୁ ହେବ, ସେ ଜାଣି ପାରିଲା ନାହିଁ । ସେ ଚୁପ୍ ହୋଇ ଠିଆ ହୋଇ ରହିଲା । ଗୋଡ଼ ଆଉ ତାର ଚଳିଲା ନାହିଁ ।

ପେଚାଟି ବରଗଛରେ ବସି ହାତୀକୁ ଲକ୍ଷ୍ୟ କରୁଥିଲା । ହାତୀର ଏ ଅବସ୍ଥା ଦେଖି ତାର ଦୁଃଖ ହେଲା । ସେ ହାତୀ ଭାଇଙ୍କୁ ପଚାରିଲି

ପଚାରିଲା—"ଭାଇ ! କ'ଣ ହେଲା ? ତୁ ଏପରି ଘୁଙ୍ଗୁଆ ଭାବିକି ହେଉଛୁ ?"

ହାତୀ ସବୁ କଥା ଗୋଟି ଗୋଟି କରି ପେଚା ଆଗରେ କହିଲା । ବାଘ ବି ସେ କଥା ସତ୍ୟ ବୋଲି ସଫେଇ ଦେଲା । ପେଚା କହିଲା—"ବାଘ ଭାଇ ! ତୁ କହୁଛୁ ଯେ ପ୍ରଭୁ ଶିବ ତୋତେ ହାତୀ ମୁଣ୍ଡ ଖାଇବାକୁ କହିଛନ୍ତି । ଏହା ଯଦି ସତ୍ୟ ହୋଇଥାଏ, ଆମର ଆପତ୍ତି ନାହିଁ । ଚାଲ ତିନିହେଁ ଯିବା । ଶିବଙ୍କଠାରୁ ସତ କଥା ବୁଝିବା ।"

ବାଘର ପେଚା କଥାରେ ଆପତ୍ତି ନଥିଲା । ବାଘ କହିଲା—"ଶୁଭ କାମ ଶୀଘ୍ର କରିବ । ତେଣୁ ଏବେ ଚାଲ ଶିବଙ୍କ ପାଖକୁ ଯିବା । ଏଥିରେ ହାତୀ ଓ ପେଚା ରାଜି ହୋଇଗଲେ ।"

ସମସ୍ତେ ମିଳିକରି ଶିବଙ୍କ ପାଖକୁ ଚାଲିଲେ । ବାଟରେ ପେଚା କହିଲା— 'ତୁମେ ଚାଲି ଚାଲି ଆସୁଛ । ମୁଁ ଉଡ଼ିକରି ଯାଉଛି । ମୁଁ ଆଗ ଆସି ବାଟରେ ଅପେକ୍ଷା କରୁଛି । ତୁମେ ମିଶିଲେ ପୁଣି ଉଡ଼ିକରି ଯାଉଛି । ଏମିତି ମୋତେ କଷ୍ଟ ହେଉଛି । ମୋତେ ଅନୁମତି ଦିଅ ! ମୁଁ ଆଗ ଶିବଙ୍କ ପାଖକୁ ଯାଏ । ତୁମେ ପରେ ଆସ ।"

ବାଘ ଓ ହାତୀ ପେଚା କଥାରେ ରାଜି ହୋଇଗଲେ । ପେଚାଟି ଉଡ଼ି ଉଡ଼ି ଶିବଙ୍କ ନିଆସରେ ପହଞ୍ଚିଗଲା । ସେଠି ଶିବଙ୍କ ଆଗରେ ବସି ଢୁଳାଇଲା । ମଝିରେ ମଝିରେ ଶୋଇ ପଡ଼ୁଥିବାର ଛଳନା କଲା । ତା'କୁ ଶିବ ପଚାରିଲେ—"ତୁ ଭାବିକି ଆସିଛୁ ?"

ନିଦରୁ ଉଠିଲା ଭଳି ଛଳନା କରି ପେଚା କହିଲା—"ମହାପ୍ରଭୁ ! ମୁଁ ସ୍ୱପ୍ନ ଦେଖୁଥିଲି । ତାହା ଏକ ଅପୂର୍ବ ସ୍ୱପ୍ନ ।

ସେଥିରେ ମୁଁ ଦେଖା ପାଦଶାଙ୍କୁ ହତ୍ୟା କରୁଛି । ଏହା କ'ଣ ସତ୍ୟ ହୋଇପାରେ ?"

ଶିବ କହିଲେ—"ସ୍ୱପ୍ନ ସତ୍ୟ ହୁଏନାହିଁ । ତୁ ସ୍ୱପ୍ନ ଦେଖିଲୁ ବୋଲି ମା ପାଦଶାକୁ ହତ୍ୟା କରି ପାରିବୁ ନାହିଁ ।"

ସାଙ୍ଗେ ସାଙ୍ଗେ ସେଇଟି କହିଲା—"ହାତୀ ମୁଣ୍ଡ ଖାଉଥିଲା ବୋଲି ବାଘ ସ୍ୱପ୍ନ ଦେଖିଲା । ସ୍ୱପ୍ନ ଯଦି ଅସତ୍ୟ, ତାହାହେଲେ ତାକୁ ହାତୀ ମୁଣ୍ଡ ଖାଇବାକୁ ଆପଣ କିପରି ଆଦେଶ ଦେଲେ ?"

ଶିବ କହିଲେ—"ବାଘ ହାତୀ ମୁଣ୍ଡ ଖାଇ ପାରିବ ନାହିଁ ।"

ଏହିକ୍ଷଣବେଳେ ବାଘ ଓ ହାତୀ ଶିବଙ୍କ ପାଖରେ ପହଞ୍ଚିଗଲେ । ଶିବଙ୍କର ନୂତନ ଆଦେଶ ସମସ୍ତେ ଶୁଣିଲେ । ଏଥିରେ ବାଘର ମୁହଁ ଶୁଖିଗଲା । ହାତୀ ଓ ସେଇ ଆନନ୍ଦରେ ଘରକୁ ଫେରିଲେ ।



## କୁଜା ଓ ଅନ୍ଧ

ଗୋଟିଏ ଗାଁରେ ଦୁଇଟି ହତଭାଗ୍ୟ ଲୋକ ଥିଲେ । ସେମାନଙ୍କ ମଧ୍ୟରୁ ଜଣେ କୁଜା । ଅନ୍ୟଟି ଅନ୍ଧ । ଦୁଇଜଣଯାକ ଘନିଷ୍ଠ ବନ୍ଧୁ ।

ଦିନେ ଅନ୍ଧ କୁଜାକୁ କହିଲା—"ଭାଇ, ଘରେ ବସି ସମୟ ନଷ୍ଟ କରିବା ଉଚିତ ନୁହେଁ । ଚାଲ ବାହାରକୁ ଯିବା । ଆମର ଭାଗ୍ୟ ପରୀକ୍ଷା କରିବା ।"

ଏକଥା କୁଜା ମନକୁ ଆସିଲା ନାହିଁ । ସେ କହିଲା—"ଏତେ ବଡ଼ ବଡ଼ କଥା କହିବା କେଉଁଠାରୁ ଶିଖିଲୁଣି । ତୁ ଅନ୍ଧ, ମୁଁ କୁଜା । ମୁଁ ତ ହେଲେ ଦେଖିପାରେ । ତୋର ସେତକ ବି ନାହିଁ । ତୁ କାହାର ସାହାଯ୍ୟ ନ ନେଲେ ଚାଲି ପାରିବୁ ନାହିଁ, ତେଣୁ ବାହାରକୁ ଯାଇ କି ଭାଗ୍ୟ ପରୀକ୍ଷା କରିବୁ ?"

ଏକଥା ଶୁଣି ଅନ୍ଧକୁ ହସ ଲାଗିଲା । ସେ କହିଲା—"ତୁ ଡରୁଛୁ କାହିଁକି ? ଆମେ ଗୋଟେ ଯୋଜନା କରିବା । ମୋତେ ଭଗବାନ ମଜବୁତ କରିଛନ୍ତି । ତୋ ଭଳି ଲୋକଟିଏ ବୋହି ନେବାକୁ ମୋତେ କଷ୍ଟ ହେବନାହିଁ । ମୁଁ ତୋତେ କାନ୍ଧରେ ବୋହି ନେବି । ତୋର ଆଖି ଅଛି । ତୁ ସବୁ ଦେଖିପାରିବୁ । ତାଛଡ଼ା ଭଗବାନ ବୁଦ୍ଧି ଦେଇଛନ୍ତି । ଜଣକ ବୁଦ୍ଧିଠାରୁ ଦୁଇ-ଜଣଙ୍କ ବୁଦ୍ଧି ସରସ । ଆମେ ମିଳିମିଶି ସବୁ କରିବା, ଅସୁବିଧା କେଉଁଠି ହେବ ?"

କୁଜା ଟିକିଏ ଭାବିଲା । ସେ ଦେଖିଲା—ଅନ୍ଧ କଥା ଭୁଲ କହୁ ନାହିଁ । ତେଣୁ ସେ କହିଲା—"ଠିକ୍ ଅଛି । ଚାଲ ବାହାରକୁ ଯିବା । ଆମ ଭାଗ୍ୟରେ କ'ଣ ଅଛି ଦେଖିବା ।"

ପରଦିନ ସକାଳୁ ସେମାନେ ବାହାରି ପଡ଼ିଲେ । ଅନ୍ଧଟି କୁଜାକୁ କାନ୍ଧୁଆ କରି ନେଲା । ବାଟରେ କୁଜା ଗୋଟିଏ ମୋଟା ଦଉଡ଼ି ପଡ଼ିଥିବାର ଦେଖିଲା । ତାକୁ ନେବାକୁ ତାର ଇଚ୍ଛା ହେଲା । ସେ ସେକଥା ଅନ୍ଧକୁ କହିଲା । ଅନ୍ଧ ତାକୁ କହିଲା—"ଓହ୍ଲାଇ ପଡ଼ । ତାକୁ ଧର ।" କୁଜା ଓହ୍ଲାଇ ପଡ଼ି ତାକୁ ଗୋଟାଇଲା । ପୁଣି ଅନ୍ଧ କୁଜା କାନ୍ଧରେ ବସିଲା, ତା'ପରେ

ଦେଖିଲା—ସିଦ୍ଧାରେ ଗୋଟିଏ ରନ୍ଧ ହାଣ୍ଡି ଥୁଆ ହୋଇଛି । ତାକୁ ନେବାକୁ ସେ ଅନ୍ଧକୁ ପଠାଇଲା । ଅନ୍ଧ ରାଜି ହେବାରୁ ସେ ଅନ୍ଧ କାନ୍ଧରୁ ଓହ୍ଲାଇ ତାକୁ ଧରିଲା । ତା'ପରେ ସେମାନେ ପୁଣି ଚାଲିଲେ ।

କିଛିବାଟ ଗଲାପରେ ସେମାନେ ଦଉଡ଼ିଟିଏ ଖସି ଯାଇଥିବାର ଦେଖିଲେ । ସେ କଥା କୁଜା ଅନ୍ଧକୁ କହିଲା । ଅନ୍ଧ କହିଲା—"ତାକୁ ଯା ଗୋଟାଇ କରି ଧ । ସେ ତ ଭବିଷ୍ୟତରେ କିଛି କାମରେ ଲାଗିପାରେ ।" କୁଜାଟି ତା ପଛରେ ଯାଇ ତାକୁ ଧରିଲା । ତାକୁ ବି ସେମାନେ ସାଥିରେ ନେଲେ ।

ସେମାନେ ସନ୍ଧ୍ୟାବେଳକୁ ଗୋଟିଏ ଜଙ୍ଗଲ ପାଖରେ ପହଞ୍ଚି ଯାଇଥିଲେ । ସେଠି ଗୋଟିଏ ଘର ଥିଲା । କୁଜା କହିଲା—"ସାଙ୍ଗ ! ସନ୍ଧ୍ୟା ହୋଇଗଲା । ଏଠୁ ଘୋର ଜଙ୍ଗଲ । ଆଜି ଆଗେଇବା ଉଚିତ ହେବ ନାହିଁ । ତା'ଛଡ଼ା ଆମପାଦ ଚାଲି ଚାଲି ତ ହାଲିଆ ହୋଇ ପଡ଼ିଥିବ । ମୋର ଗୋଡ଼ ଦୋହଲା ହେବଣି । ପାଖରେ ଘରଟିଏ ଅଛି । ଚାଲ ଯିବା ସେଠି ବିଶ୍ରାମ ନେବା । ରାତିଟି ଏଠାରେ କଟାଇ ପୁଣି କାଲି ସକାଳୁ ବାହାରିବା ।"

ଅନ୍ଧ କୁଜା କଥାରେ ରାଜି ହେଲା । କୁଜାର ଇଙ୍ଗିତ ଅନୁସାରେ ସେମାନେ ଘର ପାଖକୁ ଗଲେ । କାନ୍ଧରୁ ଓହ୍ଲାଇ କୁଜା ଘର ଭିତରକୁ ଉଙ୍କିଲା । ସେ ଦେଖିଲା—ଘର ଭିତରେ ଏକ ବିରାଟ ଅସୁର ଶୋଇଛି । ଘୁଙ୍ଗୁଡ଼ି ମାରୁଛି । ମେଘର ଗର୍ଜନ ପରି । ସେମାନେ ଗୋଟି ବଡ଼ ବିପଦରେ ପଡ଼ିଯାଇଛନ୍ତି ବୋଲି କୁଜା ଅନୁଭବ କଲା । ସେ ଆସ୍ତେକିନା କବାଟ ଆଉଜାଇ ଆଣିଲା । ବାହାରୁ ତାଲା ପକାଇ ଦେଲା । ଯଦ୍ୱାରା ସେ ଅସାବଧାନତା

ସବୁ ଏ କାମ କରୁଥିଲା, ତଥାପି ଟିକିଏ ଶଇ ହେଲା । ସେଥିରେ ଅସୁରର ନିଦ ଭାଙ୍ଗିଗଲା । ସେ ଆସି କବାଟ ଟାଣିଲା । କବାଟ ତ ବାହାରୁ ବନ୍ଦ, ତେଣୁ ଖୋଲିଲା ନାହିଁ । ସେ ଚିତ୍କାର କଲା । "କବାଟ ଖୋଲ, ନଇଲେ ତମକୁ ମାରି ଖାଇଦେବି" । ସେ ଧମକାଇଲା । ସେତେବେଳକୁ ଅନ୍ଧାର ଘୋଟି ଆସିଥିଲା । ମୁହଁକୁ ମୁହଁ ଦିଶୁନଥାଏ । ଦୁଇ ବନ୍ଧୁ ତାର ସୁବିଧା ନେଲେ । ସେମାନେ ଏକ ସ୍ୱରରେ କହିଲେ—"ମୁ ତୋତେ କି ତୋର ଦାଢିକୁ ଡରୁ ନାହିଁ । ମୁଁ ତୋଠାରୁ ବଡ଼ ଅସୁର । ମୁଁ ତୋତେ ମୋ ପାପୁଲିରେ ଚିପି ଦେଲେ, ତୁ ଚେପା ହୋଇଯିବୁ । ଜାମ୍ ଭଳି ମୁଁ ତୋତେ ଖାଇଦେବି । ମୋ ପାପୁଲିରେ ତୋର ଗନ୍ଧ ଛଡ଼ା ଚିହ୍ନ ବର୍ତ୍ତି ରହିବ ନାହିଁ ।

ଦୁଇଟା ଲୋକ ଏକାଠି ଗର୍ଜନ କରୁଥିବାରୁ ପାଟିଟା ଖୁବ୍ ବଡ଼ ହେଉଥିଲା । ଅସୁର ଭାବିଲା—ଯାହାର ଅସୁର ଯାହା କହୁଛି, ତା ଠିକ୍ ହୋଇ ପାରଥାଏ, ତେଣୁ ସେ ପଚାରିଲା—"ତୁ ଯେ ମୋଠାରୁ କତୁଆ ଓ ବଡ଼, ମୁଁ କିପରି ଜାଣିବି ?"

ଏମାନେ ଶୁଣି ଗର୍ଜନ କରି ପଚାରିଲେ—"କ'ଣ କଲେ ତୋର ବିଶ୍ୱାସ ହେବ ? ତୁ ଆଗ କହ ।

ଅସୁରଟି ତାର ବାଳଟିଏ ଛିଣ୍ଡାଇ କବାଟ ଫାଙ୍କରେ ଗଳାଇ ଦେଇ କହିଲା—"ଏଇଟା ମୋ ମୁଣ୍ଡର ବାଳ । ତମ ବାଳଟି ମୋତେ ଦେଖାଅ ।"

ବାଟରୁ ଯେଉଁ ଦଉଡ଼ିଟିକୁ ଆଣିଥିଲେ, ତାକୁ କୁହାଟି କବାଟ ଫାଙ୍କରେ ଘର ଭିତରକୁ ପଠାଇଦେଲେ । ତାପରେ ଉଭୟେ ଗର୍ଜିଲେ—"ଏଇ ଦେଖ ମୋ ମୁଣ୍ଡବାଳ । ତୋ ବାଳଠାରୁ ମୋଟା କି ସରୁ ?"

ଅସୁର ଦଉଡ଼ିକୁ ହାତରେ ପରୀକ୍ଷା କରି ଜାଣିଗଲା । ସେ ଭାବିଲା—ଯାହାର ବାଳ ଏତେ ମୋଟା, ତାର ଦେହ ନିଶ୍ଚୟ ମଜବୁତ ଓ ଟାଣ ହୋଇଥିବ । ସେ ବି ବଡ଼ ଓ ଖୁବ୍ ବଳୁଆ ହୋଇଥିବ ।

ଏତିକିବେଳେ ଦୁଇବନ୍ଧୁ ଡାକିଲେ—"ତୁ ତ ମୋ ମୁଣ୍ଡ-ବାଳ ଦେଖିଲୁ, ତୋ ମୁଣ୍ଡର ଉକୁଣିକୁ ଦେଖା !"

ଅସୁର କେତେଟା ଉକୁଣିକୁ ମୁଣ୍ଡରୁ ବାହାର କରି ପଦାକୁ ପକାଇ ଦେଲା । ସେସବୁକୁ କୁଜା ତା ନଖରେ ମାରିଦେଲା । ତା ପରେ ଦୁଇଜଣଯାକ ଗର୍ଜି ଉଠିଲେ—"ତୋ ଉକୁଣିକୁ ତ ମୁଁ ନଖରେ ମାରିଦେଲି । ମୋ ମୁଣ୍ଡର ଉକୁଣିକୁ ଦେଖ । ନଖରେ ମାରିବାକୁ ଚେଷ୍ଟାକର ।" ଏହା କହି କୁଜା କଇଁଚଟିକୁ ସେ ଘର ଭିତରକୁ ଛାଡ଼ି ଦେଲା । ତାକୁ ଦେଖି ଅସୁର ଆଶ୍ଚର୍ଯ୍ୟ । ସେ ତ ନଖଠାରୁ ବେଶ୍ ବଡ଼ । ତା ଛଡ଼ା ତାକୁ ମାରିବାକୁ ଅସୁରଟି ଚେଷ୍ଟାକଲା । ପାରିଲା ନାହିଁ । ତେଣୁ ସେ ମନେ ମନେ ଭାବିଲା—ତାହା ର ଥିବା ଅସୁରଟି ମୋଠାରୁ ବେଶ୍ ବଳୁଆ ।

ଏତିକିବେଳେ ସେ ଭିତରୁ ଗର୍ଜି ଉଠିଲେ—"ତୁ ଯେଉଁ ଦୁଧ ପିଉଛୁ, ମୋତେ ଟିକିଏ ଦେ । ମୁଁ ଯେଉଁ ଦୁଧ ପିଉଛି, ତାକୁ ମୁଁ ତୋତେ ଦେଉଛି ।"

ଅସୁର ଢଙ୍କାଏ ଦୁଧ ପଦାକୁ ବେଢାଇଲା । ତାକୁ କୁଜା ପିଇଦେଲା । ଏମାନେ ଚୂନ ହାଣ୍ଡିଟା ଘର ଭିତରକୁ ବଢାଇ ଦେଲେ । ଅସୁର ସେତକ ସବୁ ଖାଇଦେଲା । ସେ ଆଉ ଯାଏ କୁଆଡ଼େ ? ତଣ୍ଟି ତାର ପୋଡ଼ିଗଲା । ସେ ଛଟ ଫଟ ହୋଇ

ଚିତ୍କାର କଲା । ନିଜ କଷ୍ଟ ନିଜେ ସହି ନପାରି ତାର ଜଙ୍ଘକୁ ଟାଣି ପକାଇଲା । ଶେଷକୁ ତାର ପ୍ରାଣ ଛୁଡ଼ିଗଲା ।

ସକାଳ ହେଲା । ସେମାନେ ବାହାରୁ ଦେଖିଲେ—ଅସୁର ମରିକରି ଶୋଇଛି । ସେମାନେ କବାଟ ଖୋଲି ଘରେ ପଶିଲେ । ଅସୁର ଘରେ ବହୁତ ସୁନା, ରୁପା, ମୋତି ଓ ମାଣିକ୍ୟ ଜମା ହୋଇଥିବାର କୁଜା ଦେଖିଲା । ସେସବୁ କଥା ଅନ୍ଧକୁ କହିଲା । ତାପରେ ଦୁଇ ବନ୍ଧୁ ସ୍ଥିର କଲେ—ଆଉ ବିଦେଶ ଯାଇ ଲାଭ ନାହିଁ । ବରଂ ଏଇଠୁ ଫେରିଯାଇ ଗାଁରେ ରହିବା । ଯାହା ଧନ ସଂଗ୍ରହ ହେଲା, ଜୀବନର ଅବଶିଷ୍ଟ ଅଂଶ କଟାଇବାକୁ ତାହା ଯଥେଷ୍ଟ । ତାପରେ ସେମାନେ ଧନରତ୍ନ ଧରି ଗାଁକୁ ଫେରି ଆସିଲେ ।

ଗାଁ ମୁଣ୍ଡରେ ପହଞ୍ଚି ଧନରତ୍ନ ବାଣ୍ଟିବା ପାଇଁ ସ୍ଥିର କଲେ । କୁଜା ଭାଗ ବାଣ୍ଟିବାର ଦାୟିତ୍ୱ ନେଲା । ସେ ଭାବିଲା—ଅନ୍ଧ ତ କିଛି ଦେଖି ପାରୁନାହିଁ । ବର୍ତ୍ତମାନ ଦୁଇଭାଗ କରିଦେଲେ, ସାନ ଭାଗଟି ଅନ୍ଧକୁ ଭଣ୍ଡି ଦେବ । ବଡ ଭାଗ ସେ ନେବ । ସେଇ ଅନୁସାରେ ସେ ଭାଗ କଲା ! କିନ୍ତୁ ଭାଗ୍ୟର ଗତି ଭିନ୍ନ । ଅନ୍ଧ ଯେଉଁ ଅଂଶଟିକୁ ଛୁଇଁଲା, ତାହା ବଡ଼ ଭାଗ । ଏଥିରେ କୁଜା କ୍ଷୁବ୍ଧ ହୋଇ କହିଲା—ଭାଗ ଏଥର ଠିକ୍ ହେଲା ନାହିଁ । ଆଉ ଥରେ ଭାଗ କରିବା । ପୂର୍ବପରି ଅସମାନ ଭାଗ କଲା । କିନ୍ତୁ ଭାଗ୍ୟକୁ ବଡ଼ ଭାଗକୁ ଅନ୍ଧ ଆବୋରି ନେଲା ।

କୁଜା ଭାବିଲା—ପ୍ରକୃତରେ ତାର ବନ୍ଧୁ ଜଣକ ସବୁ ଦେଖି ପାରୁଛି । ଅନ୍ଧ କେବଳ ତାର ଗୋଟେ ବାହାନା । ସେ ତ ଖୁବ୍ ରାଗିଗଲା । ମୁଠାଏ ବାଲି ଆଣି ତା ଆଖିରେ ଘଷି ଦେଲା ।

ଖୋଜିଲା, ଯଦି ଅନ୍ଧ ନ ହୋଇଥାଏ, ଏଥର ଅନ୍ଧ ହୋଇଯିବ । କିନ୍ତୁ ଅନ୍ଧର ଭାଗ୍ୟ ଭଲ । ପରଳ ଯୋଗୁ ସେ ତ ଅନ୍ଧ ହୋଇ ଯାଇଥିଲା । ବାଉଁଶ ଘଷା ହେବାରୁ ପରଳ ଛୁଟିଗଲା । ସେ ସବୁ ଏଥର ଦେଖି ପାରିଲା । ତାର ବନ୍ଧୁ ଯେ ତାକୁ ଠକୁଥିଲା, ଏଥର ସେ ଜାଣିପାରିଲା । ସେ ଖୁବ୍ ରାଗିଗଲା । ସେ ଖୁବ୍ ଜୋରରେ ବନ୍ଧୁର କୁଜକୁ ଗୋଟେ ବିଧା ଦେଲା । ଆଶ୍ଚର୍ଯ୍ୟ, ତାର କୁଜ ବି ଭଲ ହୋଇଗଲା ।

ଏଥର ଉଭୟେ ଖୁସି । ଆଣିଥିବା ଧନ ସମାନ ସମାନ ଦୁଇ ଭାଗ କଲେ । ସେତକ ଘରକୁ ନେଇ ଆନନ୍ଦରେ କାଳ କଟାଇଲେ ।



# ଜ୍ଞାନ ଓ ମୋନ

ଗୋଟିଏ ଗାଁରେ ଦୁଇଟି ଭାଇ ରହୁଥିଲେ । ବଡ ଜ୍ଞାନ । ସାନ ମୋନ । ଜ୍ଞାନ ଖୁବ ଧୂର୍ତ୍ତ । କିନ୍ତୁ ମୋନ ବୋକା ।

ଜ୍ଞାନକୁ ମୋନ ଭକ୍ତି କରେ । ଜ୍ଞାନର କଥା ମାନେ । ଜ୍ଞାନର କଥାରେ ତାର ଖୁବ ବିଶ୍ୱାସ ।

ଜ୍ଞାନ ଦେଖିଲା—ମୋନ ବୋକା । ତା' ଉପରେ ନିର୍ଭରଶୀଳ । ସେ ଏହାର ସୁବିଧା ନେବା ଉଚିତ । ଭାବି ଭାବି ସେ ସ୍ଥିର କଲା—ମୋନକୁ ସେ ଭଲେ ହେବାକୁ ଦେବନି । ସେ ସଜ

ହେବ । ଜିନିଷ ବାଣ୍ଟିବାକୁ ସେ ଭାଇକୁ କହିବ । ସେ ଏଥିରେ ଫାଇଦା କିଛି ଉଠାଇବ ।

ଦିନେ କୋନ ମୋନକୁ କହିଲା—ଆମେ ଦୁଇ ଭାଇ ଏକାଠି ରହିଛେ । ଯାହା ରୋଜଗାର କଲେ, ସବୁ ଖାଇଦେଲେ । କେହି କାହାର ସୁବିଧା କିଛି କରି ପାରିଲେ ନାହିଁ । ମୁଁ ଭାବୁଛି ଅଲଗା ହେଲେ, ଆମ ଦୁହିଁଙ୍କର ସୁବିଧା ହେବ । ସେ ଯାହାର ପଥ ଫିକର କରି କିଛି ସଞ୍ଚି ପାରିବା । ତୋର ମତ କ'ଣ ?"

ମୋନ କହିଲା—"ମୁଁ ତ ପିଲାଦିନରୁ ତମ କଥା ମାନି ଆସିଛି । ଆଜି କ'ଣ ଅମାନିଆ ହେବି । ତମେ ଯାହା କହିବ, ସେଥିରେ ମୋର ରାଜି ।"

କୋନ କହିଲା—"ତମେ ବଡ଼ ଭାଇ । ବାପ ଭଳିଆ । ତୁମେ କ'ଣ ମୋ ପ୍ରତି ଅନ୍ୟାୟ କରିବ ? ତା କେବେ ହେଲେ ହେବ ନାହିଁ । ତେଣୁ ତୁମେ ବାଣ୍ଟି ଦିଅ । ମୋର ମଧ୍ୟସ୍ଥ ଲୋଡ଼ା ନାହିଁ ।"

କୋନ କହିଲା—"ଗାଁ'ରେ ଆମେ ଦୁ'ଭାଇ ଏକାଠି ଅଛନ୍ତି ବୋଲି ଲୋକେ ଜାଣନ୍ତି । ଜିନିଷ ପତ୍ର ବଣ୍ଟାବଣ୍ଟି କରି ନେଲେ ଲୋକେ ହସିବେ । ସବୁ ଏକାଠି ଥାଉ । ଗୋଟିଏ ଗୋଟିଏ କରି ଜିନିଷ ବାଣ୍ଟିବା । ତାହାହେଲେ, ଆମେ ଭିନ୍ନ ହୋଇଛେ ବୋଲି, ସହଜେ କେହି ଜାଣି ପାରିବେ ନାହିଁ ।"

ମୋନ ମୁଣ୍ଡ ହଲାଇ ସମ୍ମତି ଦେଲା । ତାପରେ କୋନ କହିଲା—ଏଇ ନ ଶୀତ ଦିନ । ରେଜେଇ ଆଗ ବାଣ୍ଟିଦେବା ।

ତୁ ଦିନରେ ସେଇଟି ରଖିବୁ । ଗଛଟି ମୋତେ ଦେଇଦେବୁ ।"
ମୋକ ଏ ପ୍ରସ୍ତାବରେ ଦ୍ୱିଧା ପ୍ରକାଶ କଲା ନାହିଁ ।

ସେଇଦିନୁ ମୋକ ରେଜେଇକୁ ନିଏ । ଦିନରେ ଖସି ଦିଏ । ରାତି ହେଲେ କୋକକୁ ଦେଇଦିଏ । ରାତିରେ କୋକ ରେଜେଇ ଘୋଡ଼େଇ ହୋଇ ଶୁଏ । ଆରାମ କରେ । ଅଥଚ ଶୀତରେ ମୋକ ଥରୁ ଥରୁ ହୁଏ । ନିଦ ତାକୁ ହୁଏ ନାହିଁ । କିନ୍ତୁ ଏ ସମ୍ପର୍କରେ ମୋକ କୋକକୁ କଥା ପଦେ ବି କହେ ନାହିଁ ।

କିଛି ଦିନ ପରେ କୋକ କହିଲା—"ମୋକ ଏଥର ଆମ୍ବଗଛ ଗଛକୁ ବାଣ୍ଟି ଦେବା । ତୁ ତ ସାନ । ଆମ୍ବ ଗଛମାନଙ୍କର ତଳ ଅଂଶ ତୋର । ମୁଁ ବଡ଼ । ଉପର ଅଂଶ ମୋର ।"

ମୋକ ବିନା ଆପତ୍ତିରେ ରାଜି ହୋଇଗଲା । ସେଇଦିନୁ ସେ ଆମ୍ବ ଗଛମାନଙ୍କର ମୂଳ ସଫା କରେ । ଖତ ଦିଏ । ପାଣି ମଡ଼ାଏ । ଫଳରେ ସେ ବର୍ଷ ଆମ୍ବଗଛରେ ନାହିଁ ନଥିବା ଆମ୍ବ ହେଲା । ସବୁ କୋକ ନେଲା । ମୋକକୁ ଗୋଟିଏ ହେଲେ ଆମ୍ବ ଦେଲା ନାହିଁ ।

ସେମାନଙ୍କର ଗାଈଟି ଜନ୍ମ କଲା । କୋକ କହିଲା—"ମୋକ ଆମର ଗାଈ ଜନ୍ମ କଲାଣି । ତାକୁ ଭାଗ ବାଣ୍ଟି ଦେବା । ତୁ ଆଗପଟ ନେ । ମୁଁ ଏଥର ପଛ ପଟ ନେଉଛି ।"

ମୋକ ଏଥିରେ ବି ରାଜି । ସେଇଦିନୁ ସେ ଘାସ କାଟେ । ଗାଈର ଖାଦ୍ୟ ଆଣେ । ଗାଈକୁ ମନବୋଧ କରି ଖୁଆଏ । ଗାଈର ଯତ୍ନ ନିଏ । ଗାଈ ମୁହଁରେ ତ ଦୁଧ । ଫଳରେ ଗାଈ ପ୍ରଚୁର ଦୁଧ

ଦେଲା । ସବୁ ଦୁଧ ଓ ଗୋବର କୋଳ ନଏ । ଗାଈ ଗୁଡ଼ାକଟି କେବଳ ହଫାଡରେ ।

ମୋନ ସିଧା ଟୋକା । କିନ୍ତୁ ଭାଇର ସ୍ୱାର୍ଥପର ଢଙ୍ଗ ସବୁ ସେ ହୃଦୟଙ୍ଗମ କରେ । ଭାଇ ଯେ ତା' ପ୍ରତି ଅନ୍ୟାୟ କରିବ, ଏକଥା କେବେ ସେ କଳ୍ପନା କରି ନଥିଲା ।

ଭାଇ ଯେ ଏବେ ଅନ୍ୟାୟ କରୁଛି, ତାର ଆଉ ସନ୍ଦେହ କରିବାର କିଛି ନଥିଲା । ସେଥିପାଇଁ ତାର ମନରେ ଭାରି ଦୁଃଖ । ସବୁବେଳେ କ'ଣ ସେ ଭାବୁଥାଏ ।

ଦିନେ ଗାଁର ବୁଢ଼ୀଟିଏ ମୋନକୁ ଦେଖି କଅଁଳେଇ କରି କହିଲା—"ପୁଅରେ ! ତୋର କ'ଣ ହୋଇଛି ଯେ ତୋ ମୁହଁ ଶୁଖିଯାଇଛି ?"

ମୋନର ଛାତି ଭିତରେ କେତେ ଭାବନା ଆଉ କେତେ ଚିନ୍ତା ଜମାଟ ଭଳି ଜମି ରହିଥିଲା । ବୁଢ଼ୀର ତା' ପ୍ରତି ସ୍ନେହ ଓ ଶ୍ରଦ୍ଧା ଦେଖି, ସେ ନିଜକୁ ସମ୍ଭାଳି ପାରିଲାନାହିଁ । ଭଇଁ ଭଇଁ ହୋଇ କାନ୍ଦିଲା । ସେ ସବୁ କଥା ଗୋଟି ଗୋଟି କରି ବୁଢ଼ୀ ଆଗରେ କହିଲା । ଶେଷକୁ କହିଲା—"ଭାଇଙ୍କର ଅନ୍ୟାୟ ମୁଁ ସହି ପାରିବ ନାହିଁ । ଘରଛାଡ଼ି ପଳାଇବ ।"

ବୁଢ଼ୀ କହିଲା—"ତୁ ତ ସରଳ ପିଲାଟିଏ । ଭାଇ ତୋର ସୁଣ୍ଡଧାବାଘ । ତୁ ମୋ କଥା ମାନ । ମୁଁ ଯାହା କହୁଛି, ସେଇଆ କରିବୁ । ଦେଖିବୁ, ଭାଇ କପାଳ ବଦଳିଯିବ ।"

ମୋନ ପଚାରିଲା—"ଆଈ ! ମୁଁ କ'ଣ କରିବ କୁହ ।"

ବୁଢ଼ୀ କହିଲା—"ତୁ ଚଢ଼େଇକୁ ବନରେ ଉଡ଼ା କରିଦେବୁ। ସେଇ ଉଡ଼ା ଚଢ଼େଇଟିକୁ ଘରକୁ ସନ୍ଧ୍ୟାବେଳେ ଦେବୁ। ସେ ତ ତାକୁ ଆଉ ଯୋଡ଼ି ହୋଇ ପାରିବ ନାହିଁ। ତୋ ଭଳି ଶୀତରେ ଥରୁ ଥରୁ ହେବ। ସେ ଯଦି ତୋତେ ପଚାରେ ଯେ ତୁ କାହିଁକି ଚଢ଼େଇ ଉଡ଼ାଇଲୁ। ତୁ କହିବୁ—ଚଢ଼େଇ ବନରେ ମୋର। ମୋ ଇଚ୍ଛା ଯାହାହେବ, ମୁଁ ତାକୁ ବନରେ ସେମିତି କରିବି। ତୋର ସେଥିରେ ଆପତ୍ତି କରିବାର କିଛି ନାହିଁ। ସେ ଯଦି ଚୁପ୍ ହୋଇଯିବ ତାହାହେଲେ ଭଲ! ତାପରେ ସେ ଯେତେବେଳେ ଆମ୍ବଗଛରେ ଚଢ଼ି ଆମ୍ବ ତୋଳିବ ତୁ ଗୋଟିଏ କୁରାଢ଼ୀ ଆଣିବୁ। ଗଛର ମୂଳ ହାଣିବାକୁ ଆରମ୍ଭ କରିବୁ। ସେ ଖୁବ୍ ଡରିଯିବ। ଗଛରୁ ଓହ୍ଲାଇ ଆସିବ। ତୋତେ ପଚାରିବ—ହଇରେ ଗଛ କାହିଁକି ହାଣୁଛୁ? ତୁ ଧୀରସ୍ଥିର ଭାବରେ କହିବୁ, ଗଛ ମୂଳଟି ମୋର। ମୋ ଇଚ୍ଛା ହେଲା, ମୁଁ ହାଣୁଛି। ତମର କ'ଣ କ୍ଷତି ହେଉଛି? ସେ ଯଦି ନ ହାଣିବାକୁ ବାଧ୍ୟ କରେ, ତୁ କହିବୁ, ମୁଁ ଗଛ ହାଣିବା ଯଦି ବନ୍ଦ କରିବି, ତୁମେ ଗଛରୁ ଆମ୍ବ ତୋଳିବା ବି ବନ୍ଦ କରିବ। ସେ ରାଜି ହୋଇଯିବ, ତୁ ଗଛ ଆଉ ହାଣିବୁ ନାହିଁ। ସନ୍ଧ୍ୟାରେ ସେ ତ ଗାଈ ଦୁହିଁବାକୁ ଯିବ। ତୁ ଗୋଟେ ପାଞ୍ଚଣ ଧରି ସେତିକି ବେଳେ ଯିବୁ। ଗାଈ ମୁହଁକୁ ଦି' ପାହାରେ ଦେବୁ। ଗାଈଟି ଡେଇଁବ। ଦୁଧ ଦୁହାଁଇ ଦେବ ନାହିଁ। ସେ ବିରକ୍ତ ହୋଇ କହିବ, ଏ କ'ଣ ହେଉଛୁ? ତୁ ଧୀରସ୍ଥିର ଭାବରେ କହିବୁ— ଆଗଥର ଗାଈକୁ ମୋତେ ଦେଇଛ। ମୁଁ କ'ଣ ମନ ଇଚ୍ଛା ତାକୁ ବ୍ୟବହାର କରି ପାରିବି ନାହିଁ? ଯାଇ ତୋତେ ଅନୁରୋଧ କରିବ। ଜାବୁଡ଼ି ମିନତି ହେବ, ଫୁସୁଲାଇବ। ତୁ ଜମା ସେକଥା

ଶୁଣିବୁ ନାହିଁ । ତୁ କେତେବେଳେ ତାକୁ ଦୁଧ ଦୁହାଁଇ ଦେବୁ ନାହିଁ । ତୁ ଯଦି ମୋ କଥା ମାନିବୁ, ତେବେ ଦେଖିବୁ – ଭଲ ତୋର ବାଗକୁ ଆସିଯିବ । ଆଗେ ଯେମିତି ଏକାଠି ମିଳିମିଶି ସୁଖରେ ଥିଲ, ସେମିତି ରହିବ ।"

ମୋନକୁ ବୁଢ଼ୀ ଯେମିତି କହିଥିଲା, ମୋନ ଠିକ ସେମିତି କଲା । ଫଳରେ କୋନ ଦେଖିଲା, ମୋନକୁ ଆଉ ଠକି ଦେବ ନାହିଁ । ବରଂ ଅଲଗା ଅଲଗା ରହିଲେ ସମ୍ପତ୍ତି ଭୋଗ କରି ଦେବ ନାହିଁ । ସମ୍ପତ୍ତି ସବୁ ନଷ୍ଟ ହୋଇଯିବ । କେହି କିଛି ପାଇବେ ନାହିଁ ।

ସେ ମୋନକୁ କହିଲା—"ମୋନ ! ଆ ଆମେ ଆଗେ ଯେମିତି ଥିଲେ, ଏବେ ପୁଣି ସେମିତି ରହିବା । ଆମ ଭିତରେ ଭାଗ ଭାଗ ବାଣ୍ଟିବାଣ୍ଟା କମା ସୁବିଧା କଥା ନୁହଁ !'

ଦୁ'ଭାଇ ଆନନ୍ଦରେ ତାପରେ ଦିନ କାଟିଲେ ।



# ପୃଥିବୀର ଲୋକକଥା

(୧) ଭିଏତ୍‌ନାମ (୨) ଲାଦାଖ-୧ (୩) ଲାଦାଖ-୨ (୪) ପଞ୍ଜାବ-୧ (୫) ପଞ୍ଜାବ-୨ (୬) ପଞ୍ଜାବ-୩ (୭) ପଞ୍ଜାବ-୪ (୮) ପଞ୍ଜାବ-୫ (୯) ଉତ୍ତର ପ୍ରଦେଶ -୧ (୧୦) ଉତ୍ତର ପ୍ରଦେଶ -୨ (୧୧) ପଞ୍ଜାବ-୬ (୧୨) ଉତ୍ତର ପ୍ରଦେଶ-୩ (୧୩) ପଞ୍ଜାବ-୭ (୧୪) ଉତ୍ତର ପ୍ରଦେଶ -୪ (୧୫) ମଧ୍ୟ ପ୍ରଦେଶ -୧ (୧୬) କାଶ୍ମୀର-୧ (୧୭) ଆସାମ-୧ (୧୮) କାଶ୍ମୀର -୨ (୧୯) କାଶ୍ମୀର-୩ (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧ (୨୨) ଆସାମ-୨ (୨୩) ଶ୍ରୀଲଙ୍କା-୧ (୨୪) ଋଷିଆ-୧ (୨୫) ଇହୁଦୀ-୨ (୨୬) ସାନ୍ତାଳ-୧ (୨୭) ଇଟାଲୀ-୧ (୨୮) ମଧ୍ୟପ୍ରଦେଶ-୨ (୨୯) ଶ୍ରୀଲଙ୍କା-୨ (୩୦) ସାନ୍ତାଳ-୨ (୩୧) ସାନ୍ତାଳ-୩ (୩୨) ସାନ୍ତାଳ-୪ (୩୩) ସାନ୍ତାଳ-୫ (୩୪) ସାନ୍ତାଳ-୬ (୩୫) ସାନ୍ତାଳ-୭ (୩୬) ନେପାଳ -୧ (୩୭) ହରିଆନା-୧ (୩୮) ସାନ୍ତାଳ-୮ (୩୯) ସାନ୍ତାଳ-୯ (୪୦) ସାନ୍ତାଳ-୧୦ (୪୧) ସାନ୍ତାଳ-୧୧ (୪୨) ସାନ୍ତାଳ-୧୨ (୪୩) ସାନ୍ତାଳ-୧୩ (୪୪) ସାନ୍ତାଳ-୧୪ (୪୫) ବଙ୍ଗ-୧ (୪୬) ନେପାଳ-୨ (୪୭) ତିବ୍ବତ-୧ (୪୮) ଇହୁଦୀ-୩ (୪୯) ଇହୁଦୀ-୪ (୫୦) ଜାପାନ-୧ (୫୧) ତାମିଲନାଡୁ-୧ (୫୨) ତାମିଲନାଡୁ-୨ (୫୩) ତାମିଲନାଡୁ-୩ (୫୪) ତିବ୍ବତ-୨ (୫୫) ଫିଲିପାଇନ୍‌-୧ (୫୬) ଫିଲିପାଇନ୍‌-୨ (୫୭) ଚୀନ୍‌-୧ (୫୮) ଫ୍ରାନ୍‌ସ-୧ (୫୯) ଫ୍ରାନ୍‌ସ-୨ (୬୦) ସ୍କଟଲ୍ୟାଣ୍ଡ-୧ (୬୧) ଇହୁଦୀ-୫ (୬୨) ହିମାଚଳ ପ୍ରଦେଶ-୨ (୬୩) ଆସାମ୍‌-୩ (୬୪) ହିମାଚଳ ପ୍ରଦେଶ-୩ (୬୫) ଶ୍ରୀଲଙ୍କା-୩ (୬୬) ମିଆଁମାର-୧ (୬୭) ମିଆଁମାର-୨ (୬୮) ଇରାନ୍‌-୧ (୬୯) ଚୀନ୍‌-୨ (୭୦) ମଧ୍ୟପ୍ରଦେଶ-୩ (୭୧) କେରଳ-୧ (୭୨) ଚୀନ୍‌-୩ (୭୩) ରାଜସ୍ଥାନ-୧ (୭୪) କେରଳ-୨ (୭୫) ରାଜସ୍ଥାନ-୨ (୭୬) ରାଜସ୍ଥାନ୍‌-୩ (୭୭) ମିଆଁମାର-୩ (୭୮) ହରିଆନା-୨ (୭୯) ମିଆଁମାର-୪ (୮୦) ସାଉଦି ଆରବ ଓ ଆଲଜେରିଆ (୮୧) ଚୀନ୍‌-୪ (୮୨) ଚୀନ୍‌-୫ (୮୩) ଚୀନ୍‌-୬, (୮୪) ଇରାକ୍‌-୧ (୮୫) ଭାରତ-୧ (୮୬) ଋଷିଆ-୨ (୮୭) ଋଷିଆ-୩ (୮୮) ଋଷିଆ-୪ (୮୯) ଇରାନ୍‌-୨ (୯୦) ବଙ୍ଗ-୨ (୯୧) କୋରିଆ-୧ (୯୨) କୋରିଆ-୨ (୯୩) ଇରାକ୍‌-୨ (୯୪) ବଙ୍ଗ-୩ (୯୫) ବଙ୍ଗ-୪ (୯୬) ଆସାମ୍‌-୪ (୯୭) ଇଣ୍ଡୋନେସିଆ-୧ (୯୮) ତେଲଙ୍ଗୁ ଦେଶ -୧ (୯୯) ଉତ୍ତର ଭାରତ-୧ (୧୦୦) ସିରିଆ-୧ (୧୦୧) ଜର୍ମାନ୍‌-୧ (୧୦୨) ଉତ୍ତର ଭାରତ-୨ (୧୦୩) ଜର୍ମାନ୍‌-୨ (୧୦୪) ଗ୍ରୀସ-୧ (୧୦୫) ଉତ୍ତର ଭାରତ-୩ (୧୦୬) ମରକ୍କୋ-୧ (୧୦୭) ଲୁସାଇ (୧୦୮) ଆଙ୍ଗୋଲ (୧୦୯) ପାର୍ଥି (୧୧୦) ମିଶର (୧୧୧) ଆବି ସେଡିଆ (୧୧୨) ଲାଦାଖ-୩ (୧୧୩) ଆସାମ୍‌-୫ (୧୧୪) ହିମାଚଳ ପ୍ରଦେଶ-୪ (୧୧୫) ହିମାଚଳ ପ୍ରଦେଶ-୫

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ, ପୋ: ଦାଧାକ, ଜିଲ୍ଲା-ପୁରୀ**

ସି.ଡି.ଏ, ସି-୩୨ (ସେକ୍ଟର-୭), କଟକ-୧୪

# ପୃଥିବୀର ଲୋକକଥା

(୧) ଭିଏତ୍‌ନାମ (୨) ଲାଦାଖ-୧ (୩) ଲାଦାଖ-୨ (୪) ପଞ୍ଜାବ-୧ (୫) ପଞ୍ଜାବ-୨ (୬) ପଞ୍ଜାବ-୩ (୭) ପଞ୍ଜାବ-୪ (୮) ପଞ୍ଜାବ-୫ (୯) ଉତ୍ତର ପ୍ରଦେଶ -୧ (୧୦) ଉତ୍ତର ପ୍ରଦେଶ -୨ (୧୧) ପଞ୍ଜାବ-୬ (୧୨) ଉତ୍ତର ପ୍ରଦେଶ-୩ (୧୩) ପଞ୍ଜାବ-୭ (୧୪) ଉତ୍ତର ପ୍ରଦେଶ -୪ (୧୫) ମଧ୍ୟ ପ୍ରଦେଶ -୧ (୧୬) କାଶ୍ମୀର-୧ (୧୭) ଆସାମ-୧ (୧୮) କାଶ୍ମୀର -୨ (୧୯) କାଶ୍ମୀର-୩ (୨୦) ଇହୁଦୀ-୧ (୨୧) ହିମାଚଳ ପ୍ରଦେଶ-୧ (୨୨) ଆସାମ-୨ (୨୩) ଶ୍ରୀଲଙ୍କା-୧ (୨୪) ଋଷିଆ-୧ (୨୫) ଇହୁଦୀ-୨ (୨୬) ସାନ୍ତାଳ-୧ (୨୭) ଇଟାଲୀ-୧ (୨୮) ମଧ୍ୟପ୍ରଦେଶ-୨ (୨୯) ଶ୍ରୀଲଙ୍କା-୨ (୩୦) ସାନ୍ତାଳ-୨ (୩୧) ସାନ୍ତାଳ-୩ (୩୨) ସାନ୍ତାଳ-୪ (୩୩) ସାନ୍ତାଳ-୫ (୩୪) ସାନ୍ତାଳ-୬ (୩୫) ସାନ୍ତାଳ-୭ (୩୬) ନେପାଳ -୧ (୩୭) ହରିଆନା-୧ (୩୮) ସାନ୍ତାଳ-୮ (୩୯) ସାନ୍ତାଳ-୯ (୪୦) ସାନ୍ତାଳ-୧୦ (୪୧) ସାନ୍ତାଳ-୧୧ (୪୨) ସାନ୍ତାଳ-୧୨ (୪୩) ସାନ୍ତାଳ-୧୩ (୪୪) ସାନ୍ତାଳ-୧୪ (୪୫) କନ୍ଧ-୧ (୪୬) ନେପାଳ-୨ (୪୭) ତିବ୍ବତ-୧ (୪୮) ଇହୁଦୀ-୩ (୪୯) ଇହୁଦୀ-୪ (୫୦) ଜାପାନ-୧ (୫୧) ତାମିଲନାଡୁ-୧ (୫୨) ତାମିଲନାଡୁ-୨ (୫୩) ତାମିଲନାଡୁ-୩ (୫୪) ତିବ୍ବତ-୨ (୫୫) ଫିଲିପାଇନ୍‌-୧ (୫୬) ଫିଲିପାଇନ୍‌-୨ (୫୭) ଚୀନ୍‌-୧ (୫୮) ଫ୍ରାନ୍‌ସ-୧ (୫୯) ଫ୍ରାନ୍‌ସ-୨ (୬୦) ସ୍କଟଲ୍ୟାଣ୍ଡ-୧ (୬୧) ଇହୁଦୀ-୫ (୬୨) ହିମାଚଳ ପ୍ରଦେଶ-୨ (୬୩) ଆସାମ୍‌-୩ (୬୪) ହିମାଚଳ ପ୍ରଦେଶ-୩ (୬୫) ଶ୍ରୀଲଙ୍କା-୩ (୬୬) ମିଆଁମାର-୧ (୬୭) ମିଆଁମାର-୨ (୬୮) ଇରାନ୍‌-୧ (୬୯) ଚୀନ୍‌-୨ (୭୦) ମଧ୍ୟପ୍ରଦେଶ-୩ (୭୧) କେରଳ-୧ (୭୨) ଚୀନ୍‌-୩ (୭୩) ରାଜସ୍ଥାନ-୧ (୭୪) କେରଳ-୨ (୭୫) ରାଜସ୍ଥାନ-୨ (୭୬) ରାଜସ୍ଥାନ୍‌-୩ (୭୭) ମିଆଁମାର-୩ (୭୮) ହରିଆନା-୨ (୭୯) ମିଆଁମାର-୪ (୮୦) ସାଉଦି ଆରବ ଓ ଆଲଜେରିଆ (୮୧) ଚୀନ୍‌-୪ (୮୨) ଚୀନ୍‌-୫ (୮୩) ଚୀନ୍‌-୬, (୮୪) ଇରାକ୍‌-୧ (୮୫) ଭାରତ-୧ (୮୬) ଋଷିଆ-୨ (୮୭) ଋଷିଆ-୩ (୮୮) ଋଷିଆ-୪ (୮୯) ଇରାନ୍‌-୨ (୯୦) କନ୍ଧ-୨ (୯୧) କୋରିଆ-୧ (୯୨) କୋରିଆ-୨ (୯୩) ଇରାକ୍‌-୨ (୯୪) କନ୍ଧ-୩ (୯୫) କନ୍ଧ-୪ (୯୬) ଆସାମ୍‌-୪ (୯୭) ଇଣ୍ଡୋନେସିଆ-୧ (୯୮) ତେଲୁଗୁ ଦେଶ -୧ (୯୯) ଉତ୍ତର ଭାରତ-୧ (୧୦୦) ସିରିଆ-୧ (୧୦୧) ଜର୍ମାନ୍‌-୧ (୧୦୨) ଉତ୍ତର ଭାରତ-୨ (୧୦୩) ଜର୍ମାନ୍‌-୨ (୧୦୪) ଗ୍ରୀକ-୧ (୧୦୫) ଉତ୍ତର ଭାରତ-୩ (୧୦୬) ମଙ୍ଗୋ-୧ (୧୦୭) ଲୁସାଇ (୧୦୮) ଭାଷୋଭ (୧୦୯) ପାର୍ତ୍ତି (୧୧୦) ମିଜିର (୧୧୧) ଖାସି ଇଥିଓପିଆ (୧୧୨) ଲାଦାଖୀ-୨ (୧୧୩) ଆସାମ୍‌-୫ (୧୧୪) ହିମାଚଳ ପ୍ରଦେଶ-୪ (୧୧୫) ହିମାଚଳ ପ୍ରଦେଶ-୫

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ, ପୋ: ଦାଧୋଳ, ଜିଲ୍ଲା-ପୁରୀ
ତି.ଡି.ଏ, ବି-୩୩୨ (ସେକ୍ଟର-୭), କଟକ-୧୪